


# ଗୋମୁଖ-ଯାତ୍ରା

ଶିଲ ଶର୍ମା

ନେହେରୁ ବାଳ ପୁସ୍ତକାଳୟ

# ଗୋମୁଖ-ଯାତ୍ରା

ଶିଳ ଶର୍ମା

ଚିତ୍ର : ଗୀତ କୌର

ଅନୁବାଦ : ମନୋରମା ମହାପାତ୍ର



ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



1991। (ଶକାବ୍ଦ 1912)



Gaumukh Yatra ( Oriya )

ମୂଲ୍ୟ : ଟ 5.50

ଡାଇରେକ୍ଟର, ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ଏ-5, ଗ୍ରୀନ୍ ପାର୍କ, ନୂଆ ଦିଲ୍ଲୀ-110016
କର୍ତ୍ତୃକ ପ୍ରକାଶିତ ।

ଦେବଯାନୀ ଓ ଆଦିତ୍ୟ ବେଶ୍ ହୁସିଆର ହୋଇ ଅଜାଙ୍କ କୋଠରି ପାଖକୁ ଯାଇ ଆସ୍ତେ ଆସ୍ତେ ଦୁଆରଟି ଖୋଲିଲେ । ସେମାନଙ୍କ ଆଖି ଖୋସି ହୋଇଗଲା । ଇରେ ବାପ୍‌ରେ ଏ କ'ଣ ! ଗୋଟାଏ ବେଢ଼ଂ କାହିଁକି ବନ୍ଧା ହୋଇ ପଡ଼ିଛି ? ଖଜୁରୀ ପୁଡ଼ିଆ, ଆଉ କେତେ କିସମର ଫଳସବୁ ମଧ୍ୟ ବନ୍ଧା ହୋଇ ପଡ଼ିଛି । କ'ଣ ଚାଲିଛି ଏଠି ?

ଟିକିଏ ଆଗରୁ ଅଜା ଘରକୁ ଆସିଥିଲେ । ସେ ବଡ଼ ବ୍ୟସ୍ତ ଥିଲାପରି ଜଣାପଡ଼ୁଥିଲେ । ତାଙ୍କ କୋଠରି ଭିତରକୁ ଯାଇ ସାଙ୍ଗେ ସାଙ୍ଗେ ବାହାରି ପଡ଼ିଲେ । ଟିକିଏ ଡେରି କରିନାହାନ୍ତି । ଆଗଭଳି ପିଲାଙ୍କୁ ମଧ୍ୟ ଡାକିଲେ ନାହିଁ । କାହିଁ, ଆଗେ ତ କେବେ ସେ ଏମିତି ଅଦ୍ଭୁତ ପ୍ରକାର ଆଚରଣ କରିବା ମନେପଡ଼ୁନାହିଁ । ଆଜି ତାଙ୍କର ହେଲା କ'ଣ ?

ଶେଷରେ ଦେବଯାନୀ ମୁଣ୍ଡରୁ ବୁଦ୍ଧି କାଢ଼ି କହିଲା, "ଆଚ୍ଛା, ଚାଲ ତ ତାଙ୍କ ଘର ଭିତରକୁ ଉଙ୍କି ମାରିବା, କ'ଣ ହେଉଛି ଜଣାପଡ଼ିବ ।"

ସେମାନେ ଘର ଭିତରକୁ ଗଲେ । ଆଦିତ୍ୟ ଦେଖିଲା କାନ୍ଥର କଣ୍ଟାରେ ଅଜାଙ୍କ କୁର୍ତ୍ତା ଝୁଲୁଛି । ସେ କୁର୍ତ୍ତା ପକେଟ ଦରାଣ୍ଡି ଦେଖିଲା, ଗୋଟିଏ ପକେଟରେ ଖଣ୍ଡେ ଚକୋଲେଟ୍ ଥିଲା । ବୋଧହୁଏ ସେମାନଙ୍କ ପାଇଁ ଅଜା ଏହାକୁ ଆଣିଥିବେ । ଆର ପକେଟରେ ଖାଲି ମେଞ୍ଚାଏ କାଗଜ । ଏଥିରୁ ରହସ୍ୟ କିଛି ବୁଝି ହେଉନାହିଁ । ସେମାନେ ଦ୍ୱାର ବନ୍ଦକରିଦେଲେ । ବାରଣ୍ଡାରେ ଦୁଇଟି ଟୁଲରେ ଚୁପ୍‌ଚୁପ ବସି ରହିଲେ । ଅଜାଙ୍କ ଫେରିବା ବାଟକୁ ଅଧୀର ହୋଇ ଚାହିଁଥାଆନ୍ତି ।

ଯେତେବେଳେ ସତକୁ ସତ ଅଜା ଫେରିଆସିଲେ, ଦେବଯାନୀ ଓ ଆଦିତ୍ୟ ଆଗଭଳି ଧାଇଁ ଯାଇ ତାଙ୍କୁ ପାଛୋଟି ଆଣିଲେ ନାହିଁ । ସବୁଦିନ ଯେମିତି ଅଜା ଆସୁ ଆସୁ ଏମାନେ ସିଧା ଯାଇ ତାଙ୍କ ପକେଟ ଅଣ୍ଡାଳି ପକାନ୍ତି, ତରବର ହୋଇ ପଚାରନ୍ତି, "ଅଜା, ଆମ ପାଇଁ କ'ଣ ଆଣିଛ ? ତମେ ପରା କଥା ଦେଇଥିଲ ଚକୋଲେଟ୍ ଆଣିବ ବୋଲି, କାହିଁ ?" ସେଭଳି କିଛି କଲେନାହିଁ ।



ଅଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, 'କଥା କ'ଣ ? ପିଲେ ଗଲେ କୁଆଡ଼େ ?' ଝରକା ବାଟେ ଗୁହିଁ ଦେଖିଲେ ଦେବଯାନୀ ଓ ଆଦିତ୍ୟ ମନମାରି ଦେଇ ବାରଣ୍ଡାରେ ବସିଛନ୍ତି । 'କଥା କ'ଣ ?' ସେ ହସି ହସି ପଚାରିଲେ—"ଏଇଠି କାହିଁକି ଲୁଚି ବସିଛ ? କ'ଣ କିଛି ନଟଖଟିଆ ବୁଦ୍ଧି ମୁଣ୍ଡରେ ଜୁଟିଲାଣି କି ?"

କେହି ଉତ୍ତର ଦେଲେ ନାହିଁ । ଅଜା ପୁଣି ପଚାରିଲେ, "କହୋ, କାରଣ କ'ଣ ? କାହିଁକି ଏମିତି ମୁହଁ ଭାରି କରି ବସିଛ ?"

ଉତ୍ତର ମିଳିଲା ନାହିଁ । ସେମାନଙ୍କଠୁ କଥା କାଢ଼ିବା ପାଇଁ ଅଜା କହିଲେ, "କ'ଣ, ତୁମର ଚକୋଲେଟ ଦରକାର ନାହିଁ ?"

"ତୁମ ପ୍ରକେଟରୁ ବାହାର କରି ଆମେ ନେଇ ସାରିଲୁଣି, ତୁମ ନଜରରେ ପଡ଼ିନାହିଁ," ଦେବଯାନୀ ଉତ୍ତର ଦେଲା ।



ଅଜା ଖୁବ୍ ଜୋର୍‌ରେ ହସି କହିଲେ, "ତୁ ତ ଭାରି ବାତୁଳ ହେଲୁଣି, ମୋ ପାଖକୁ ଆସିଲୁ। କହିଲୁ କାହିଁକି ତୁମେ ଦୁହେଁ ଏମିତି ଗୁମ୍ ହୋଇ ବସିଛ ?"

"ତୁମ ଉପରେ ଆମେ ଦୁହେଁ ରାଗିଛୁ," କହିଲା ଦେବଯାନୀ।

"କାହିଁକି ?"

"ଆମକୁ ନ କହି ତୁମେ କୁଆଡ଼େ ଖସି ପଳାଉଛ," ଆଦିତ୍ୟ ଉତ୍ତର ଦେଲା।

ଅଜା ମୁରୁକିହସା ଦେଲେ, କହିଲେ, "ମୁଁ ତୁମକୁ କହିବ କହିବ ଭାବୁଥିଲି, କଥାଟି ଯାଙ୍ଗେ ଯାଙ୍ଗେ ସ୍ଥିର ହେଲା।"

ଆଦିତ୍ୟ ପଚାରିଲା, "ଅଜା, ତୁମେ କୁଆଡ଼େ ଯାଉଛ ?"

"ମୁଁ ଗୋମୁଖ ଯାଉଛି। ତୁମ ଦୁହିଁଙ୍କ ପାଇଁ ସେଠିକି ଯିବା ଭାରି କଷ୍ଟ ହେବ। ସେଇଥିପାଇଁ ମୁଁ ତୁମକୁ କହି ନଥିଲି।"

"ଏବେ ତୁମେ କୁଆଡ଼େ ଦଉଡ଼ ଯାଇଥିଲ ଯେ ?" ଦେବଯାନୀ ପଚାରିଲା।

"ମୋ ପାଇଁ ଟିକେଟ କିଣିବାକୁ ଯାଇଥିଲି।"

"ଆମ ପାଇଁ କାହିଁକି ଟିକେଟ ଆଣିଲ ନାହିଁ ?" ଆଦିତ୍ୟ ପଚାରିଲା। ସେମାନେ ତୁହାକୁ ତୁହା ପ୍ରଶ୍ନବାଣରେ ଅଜାଙ୍କୁ ନାକେଦମ୍ କଲେ। ଶେଷରେ ଅଜା ହାରି ମାନି କହିଲେ, "ଠିକ୍ ଅଛି, ତୁମମାନଙ୍କ ପାଇଁ ଟିକେଟ ଆଣୁଛି। ଜିନିଷପତ୍ର ବନ୍ଧାବନ୍ଧି କର। ମନେରଖ, ପାହାଡ଼ିଆ ଜାଗା, ବେଶୀଗୁଡ଼େ ଜିନିଷ ସାଥିରେ ଧରିବ ନାହିଁ।"

ତା' ପରଦିନ ସକାଳେ ଦେବଯାନୀ କହିଲା, "ଅଜା, ମୁଁ ଜିନିଷ ସଜାଡ଼ି ସାରିଲିଣି।" ତା' ଗଣ୍ଠିଲିପତ୍ର ଅଜାଙ୍କୁ ଦେଖାଇ ସେ କହିଲା, "ମୁଁ କେତେଟା ହାଲୁକା ଗରମ ପୋଷାକ ଧରିଛି, ଧୋଇବାକୁ ଭାରି ସୁବିଧା। ଦି'ହଳ ଜୋତା ଧରିଛି—ହାଲୁକା, ମଜଭୁତ ଓ ବେଶ୍ ଆରାମଦାୟକ।"



ଅଜା କହିଲେ, "ଏ ଝିଅ ବକଟକ କମ୍ ସିଆଣି ନୁହିଁ । ଆଦିତ୍ୟରେ, ତୁ ବି ସେଇୟା କର । ଆରାମଦାୟକ ଜୋତା ନେବୁ ଚାଲିବୁଲି ପାଇଁ । ହାଲୁକା ଗରମ ପୋଷାକ ବି ନେଇଥିବୁ ।"

"ଗୋଟିଏ ବ୍ୟାଗରେ ମୋର ସବୁ ଜାମାପଟା ରଖିଛି । ମୁଁ ତାକୁ କାନ୍ଧରେ ଝୁଲେଇ ଚାଲିବି", ଆଦିତ୍ୟ ତା'ର ଖୋଲିମେଲି ବ୍ୟାଗଟାକୁ ଅଜାଙ୍କୁ ଦେଖାଇ କହିଲା ।

ଅଜା କହିଲେ, "ସାବାସ, ସାବାସ, ଆମେ ଉତ୍ତର-କାଶୀ ଯିବା, ସେଇଠି ଗଙ୍ଗୋତ୍ରୀ ଏବଂ ଶେଷରେ ଗୋମୁଖ । ଗଙ୍ଗା କେଉଁଠୁ ବାହାରିଛନ୍ତି ମୁଁ ତୁମକୁ ଦେଖାଇଦେବି । ଚାଲ, ଟିକିଏ ସଅଳ ସଅଳ ଯିବା, ତେବେ ଟ୍ରେନ୍‌ରେ ଭଲ ଜାଗା ମିଳିଯିବ ।"

* * * *

ଉତ୍ତର-କାଶୀ ଦେଖି ଆଦିତ୍ୟ ମନ ଖୁସ୍ରେ ମୋଟ । ଅଜା ତାକୁ ତାଙ୍କ ପିଲାଦିନର ପର୍ବତ ଆରୋହଣ ପ୍ରଶିକ୍ଷଣ କେନ୍ଦ୍ର ବୁଲାଇ ଦେଖାଇଦେଲେ । ସେ କୁରାଢ଼ି, ଦଉଡ଼ି, ନିଶୁଣୀ, ଅକ୍‌ସିଜେନ୍ ସିଲିଣ୍ଡର, ତମ୍ବୁ ଇତ୍ୟାଦି ଟିକିନିଖି କରି ଭାରି ଆଗ୍ରହରେ ଦେଖିଲା ।

"ଏସବୁ କାହିଁକି ଥୁଆ ହୋଇଛି, ଅଜା ?"

"ଏତେ ବଡ଼ ଉଚ୍ଚା ଉଚ୍ଚା ପାହାଡ଼ ଉପରେ ବରଫ ପଡ଼ି ଭାରି ଖସଡ଼ା ହୋଇଥାଏ । ତା' ଉପରେ ଚାଲିବାଟା ଆଦୌ ନିରାପଦ ନୁହେଁ । ସେଇଥିପାଇଁ ଏ ସବୁର ସାହାଯ୍ୟ ଲୋଡ଼ା ।"

"ଅଜା, ମୁଁ ଯାଉଛି ପର୍ବତ ଚଢ଼ିବି । ମୋର ଏ ସବୁ ଉପକରଣ ଦରକାର", ଆଦିତ୍ୟ କହିଲା ।

"ନାଇଁରେ ପୁଅ, ଆଗ ପର୍ବତ ଚଢ଼ା ବିଦ୍ୟାଟା ଶିଖ । ଟିକିଏ ତାଲିମ ଲୋଡ଼ା । ତା'ପରେ ଯାଇ ପର୍ବତ ଚଢ଼ିବୁ । ଏ ସଂସ୍ଥାର ପ୍ରତିଷ୍ଠାତା ବ୍ରିଗେଡ଼ିଅର ଜ୍ଞାନ ସିଂ ତାଙ୍କ କୁଡ଼ିଆର ନାଁ କ'ଣ ଦେଇଛନ୍ତି ଜାଣିଛୁ ?"

ଦୁଆର ଉପରେ ନାମଫଳକଟି ପଢ଼ି ପିଲାଏ କହିଲେ, "ଭାଗୀରଥୀ" ।

"ବ୍ରିଗେଡ଼ିଅର ଜ୍ଞାନ ସିଂ କିଏ ଅଜା ?"

"ଭାରତର ଜଣେ ବିଖ୍ୟାତ ପର୍ବତ ଚଢ଼ାଳି । ଏଭେରେଷ୍ଟ ଗିରିଶୃଙ୍ଗକୁ ଚଢ଼ିବା

ପାଇଁ ଯେଉଁ ପ୍ରଥମ ଭାରତୀୟ ଅଭିଯାତ୍ରୀ ଦଳ ପ୍ରଚେଷ୍ଟା କରିଥିଲେ, ସେହି ଦଳର ଏ ଥିଲେ ନେତା । ଏହି ବିଷୟରେ ସେ ପିଲାଙ୍କ ପାଇଁ ଗୋଟିଏ ବହି ଲେଖିଛନ୍ତି, ସେ ବହିର ନାଁ ହେଲା 'ଶୃଙ୍ଗରୁ ଶୃଙ୍ଗକୁ' ।"

ଅଜା ସେମାନଙ୍କୁ ପଚାରିଲେ, "ଏ କୁଟୀରର କାନ୍ଥ ଉପରେ ଯେଉଁସବୁ ମୂର୍ତ୍ତିଗୁଡ଼ିକ ଲାଗିଛି, ସେଗୁଡ଼ିକ କେଉଁଥିରେ ତିଆରି କରାହୋଇଛି ?"

"ପାଣିରେ ଭାସି ଆସୁଥିବା କାଠଖଣ୍ଡରୁ", ପିଲା ଦୁହେଁ ଏକ ସ୍ୱରରେ କହିଉଠିଲେ ।

"ହଁ, ନଈ ପାଣିରେ ଭାସିଆସିଥିବା ଏଇ କାଠଗୁଡ଼ିକର କେମିତି ଗୋଟାଏ ଆକାର ପ୍ରକାର ଗଢ଼ି ଉଠିଥାଏ । ଟିକିଏ କଳ୍ପନା ଶକ୍ତି ଥିଲେ, ଟିକିଏ ଖୋଦେଇ ବିଦ୍ୟା ଜାଣିଥିଲେ ଏଇଥିରୁ କେତେ ସୁନ୍ଦର ସୁନ୍ଦର ଜିନିଷ କରିହେବ ଦେଖୁଛ ତ ?"

କୁଟୀରଟିକୁ ଆଦିତ୍ୟ ତନ୍ନ ତନ୍ନ କରି ନିରୀକ୍ଷଣ କରୁଥାଏ । ଏଣେ ଦେବଯାନୀ ସଡ଼କ ପାଖ ବଜାରକୁ ଯାଇ ନାନା କିସମର ଖେଳନା କଣ୍ଢେଇ ସବୁ ଦେଖିବାକୁ ଲାଗିଲା । ଭାବିଲା, ଘରକୁ ଫେରିଲାବେଳେ ଏଥିରୁ କିଛି କିଣିନେବ । ଅଜା ମଧ୍ୟ ତାଙ୍କ କୋଟ୍ ତିଆରି ପାଇଁ ଖୁବ୍ ସୁନ୍ଦର କପଡ଼ା ମନେମନେ ବାଛୁଥା'ନ୍ତି ।

ଆଦିତ୍ୟ କହିଲା, "ମୁଁ ଯାଉଛି ଗଙ୍ଗାରେ ଗାଧୋଇବି ।"

"କିନ୍ତୁ ମୋ ହାତ ଛାଡ଼ିବୁ ନାହିଁ, ଧରିଥାଆ," କହିଲେ ଅଜା ।

ଦେବଯାନୀ କହିଲା, "ବ୍ୟସ୍ତ ହୁଅ ନାହିଁ ଅଜା, ଆଦିତ୍ୟ ଖୁବ୍ ଭଲ ପହଁରି ଜାଣେ ।"

ଅଜା କହିଲେ, "ଦେଖ, ସୁଅ କେମିତି ଜୋର୍‌ରେ ଚାଲିଛି । ଏହି ସୁଅ ଯୁଆଡ଼େ ଯାଉଛି ସେ ଆଡ଼କୁ ପହଁରି ଯିବା ସହଜ, କିନ୍ତୁ କୂଳକୁ ଫେରିବା କଷ୍ଟ । ପାଣି ଭିତରେ ତମେ ଯେଉଁସବୁ ପଥର ଦେଖୁଛ ସେଗୁଡ଼ିକ ଯେମିତି ବାହାରକୁ ଦିଶୁଛି, ତା'ଠାରୁ ଅନେକ ବଡ଼ । ତୁମେ ଜାଣିପାରିବ ନାହିଁ, ଧକ୍କା ଖାଇବ । ପାଣିକୁ ଛୁଇଁ ଦେଖ, କେଡ଼େ ଥଣ୍ଡା । ସତେ ଯେମିତି ବରଫ ତରଳିଯାଇଛି । ଦୁହେଁରେ ପିଲେ ?"

"ଏଇ ପାଣିରେ ଆମ୍ବ ନେଇ ଥଣ୍ଡା କରି ଖାଇଲେ କେଡ଼େ ବଢ଼ିଆ ଲାଗନ୍ତା !"

ଦେବଯାନୀ ଆମ୍ବକଥା ଭାବୁଥିଲା । ଆଦିତ୍ୟର ଚିନ୍ତା କେମିତି ଗଙ୍ଗାରେ ପହଁରିବ । ଅଜାଙ୍କ ହାତ ଧରି ସେ ପାଣି ଭିତରକୁ ପଶିଲା ଏବଂ ସଙ୍ଗେ ସଙ୍ଗେ ବାହାରକୁ ଡେଇଁ ଆସିଲା । କହିଉଠିଲା—"ଅଜା, ଏ ପାଣି କ କାକର, ବାପ୍‌ରେବାପ୍, କୋଲମାରିଯାଉଛି !"

"ଆରେ ତୁ ତ କେତେଗୁଡ଼େ ବାଟ ପହଁରି ଯିବୁ ବୋଲି ମୁଁ ଡରୁଥିଲି । ହଁ, ଟିକେ ସାବଧାନ ! ପଥରଗୁଡ଼ାକ ସତରେ ଏତେ ବେଶି ଟାଣ ନୁହେଁ—ତା' ଉପରେ ତୁ ପାଦ ପକାଇଲା କ୍ଷଣି ସେଗୁଡ଼ାକ ଧୁଷ୍ଟି ଧୁଷ୍ଟି ଯିବ, ଭାରି ଖସଡ଼ା ।"

ଥରେ ଦୁ'ଥର ବୁଡ଼ନ୍ତି କି ନାହିଁ ଆଦିତ୍ୟ ଚିତ୍କାର କଲା, "ବହୁତ ହୋଇଗଲା ଅଜା, ଆଉ ନୁହଁ, ଏଥର ମୁଁ ଉଠିଲି ।"

ଅଜା ତା ହାତଧରି ଉଠେଇଦେଲେ । ଜଲ୍‌ଦି ଜାମାପେଣ୍ଟ ପିନ୍ଧିପକା ବୋଲି କହିଲେ ।

"ଦେଖିଲୁଣି ଆଦିତ୍ୟ, ଏଇଟା କି ପକ୍ଷୀ ?" ଦେବଯାନୀ ପାଟିକରି ଉଠିଲା ।

"ମୁଁ ଆଗରୁ ଏଭଳି ପକ୍ଷୀ କେବେ ଦେଖି ନଥିଲି । ସତରେ ମ—ଭାରି ସୁନ୍ଦର । ସ୍ୱାର କଳା ଆଖି ଚାରିପଟେ କମଳା ରଙ୍ଗ ଥାଇ ଏମିତି ଦିଶୁଛି ସତେ ଯେମିତି କିଏ କମଳା ରଙ୍ଗର କଜ୍ଜ୍ୱଳ ବୋଳି ଦେଇଛି । ଆଖିଯୋଡ଼ାକ କେଡ଼େ ସୁନ୍ଦର ! ଠିକ୍ ହରିଣ ଆଖି ।"

ଆଦିତ୍ୟ କହିଲା, "ଏଇଟା ପୋଷା ପକ୍ଷୀଟା ନିଶ୍ଚୟ । ହେଲେ, ଯେଉଁ ଲୋକଟାକୁ ଦେଖୁନ ତାରି ହୋଇଥିବ । ଦେଖ, କେମିତି ଖୋଲାମେଲାରେ ବୁଲୁଛି, ଦାନା ଖୁଣ୍ଟୁଛି ।"

ଅଜା ପଚାରିଲେ, "କୋଉପକ୍ଷୀ ଦେଖୁଛୁ କିରେ, ସେଇଟା ଟି, ସେ ପରା ଚକୋର ।"



ଦେବଯାନୀ ପଚାରିଲା, "ଚକୋର ପକ୍ଷୀ ? ଆଦିତ୍ୟ ତା'ର ଗୋଟାଏ ଛବି ନେଲୁ । ମୁଁ ଆମ ସ୍କୁଲର ଝିଅମାନଙ୍କୁ ଦେଖାଇବି । କୋଉ ଗୋଟାଏ ବହିରେ ମୁଁ ଚକୋର କଥା ପଢ଼ିଥିଲି । ଚକୋର କୁଆଡ଼େ ସବୁବେଳେ ଚନ୍ଦ୍ରକୁ ଚାହିଁ ରହେ ।"

"ତୁ କେମିତି ଜାଣିଲୁ ?" ଆଦିତ୍ୟ ପଚାରିଲା ।

ଦେବଯାନୀ ଟିକିଏ ରାଗିଯାଇ କହିଲା, "ମୁଁ ବହିରୁ ପଢ଼ିଛି । କ୍ୟାମେରା କାଢ଼ ।"

ଆଦିତ୍ୟ କହିଲା, "ପ୍ରଥମେ ଟିକେ ମନ ଦେଇ ଦେଖ୍ । ମୁଁ କାହିଁକି ପଚାରିଲି ଜାଣୁ ? ଚକୋର ପକ୍ଷୀ ତିତିରିଠାରୁ ବଡ଼, କୁକୁଡ଼ାଠାରୁ ସାନ—ଏ କଥା ମୁଁ ଜାଣେ । ପାହାଡ଼ିଆ ଜାଗାମାନଙ୍କରେ ଲୋକେ ଏହାକୁ ପୋଷା ମନେଇଥାଆନ୍ତି । ଏ ପକ୍ଷୀର ଖାଦ୍ୟ ହେଲା—ଶସ୍ୟଦାନା, କୀଟପତଙ୍ଗ ଏବଂ କଅଁଳିଆ ଘାସ । ଏହାର ଆଖି ଭାରି ସୁନ୍ଦର ।"

ଦେବଯାନୀ କହିଲା, "ଅଜା, ଚକୋରଟିଏ ପୋଷିଲେ କେମିତି ହୁଅନ୍ତା ? ତାକୁ ପଚାରିଲି—ଆମକୁ ଦେବେ କି ?"

"ପାଗଳ ! ଇଏ ପରା ପାହାଡ଼ିଆ ପକ୍ଷୀ, ଗରମ, ସମତଳ ଅଞ୍ଚଳରେ ଶୀଘ୍ର ମରିଯିବ । ଆ, ଜଲ୍‌ଦି ଆ—ଆହୁରି ବହୁତ ବାଟ ଯିବାକୁ ଅଛି ।"

ବସ୍‌ରେ ବସିଥିଲାବେଳେ ବି ଦେବଯାନୀର ମନ ସେଇ ଚକୋର ପାଖରେ ଥାଏ । "ଅଜା, ଇଏ କ'ଣ ଉଡ଼ିପାରେ ?"

ଆଦିତ୍ୟ ମଝିରୁ କହିଉଠିଲା, "ଦେଖିଲୁନି ତା'ର ଡେଣା ? ନିଶ୍ଚୟ ଉଡ଼ିପାରେ ।"

"ଖୁବ୍ ବେଗରେ ଉଡ଼ିପାରେ," ଅଜା କହିଲେ ।

ଦେବଯାନୀ ଟିକେ ଅଭିଯୋଗଭରା ସ୍ୱରରେ କହିଲା, "ତୁମେ ତ ଖାଲି ତରବର ହେଲ, ମୁଁ ଆଉ ଟିକେ ମନ ପୂରେଇ ଦେଖିଥାଆନ୍ତି ।"

"ଏଇ ପାହାଡ଼ିଆ ଜାଗାର ତାହା ହିଁ ବିଶେଷତ୍ୱ । ଯେଉଁଠିକି ଯାଅ ସେଇଟି ଲାଖିଯିବ; କିନ୍ତୁ ଦିନର ଆଲୁଅ ଥାଉ ଥାଉ ଗାଡ଼ି ଚଳେଇ ଯିବାକୁ ପଡ଼ିବ । ଆଉ ଏଇ ଅଙ୍କାବଙ୍କା ସଡ଼କରେ ବେଶ୍ ସାବଧାନ ରହିବାକୁ ହେବ । ସଞ୍ଜ ପରେ ଅଧିକ ବିପଦ, ତା' ଛଡ଼ା ଜଙ୍ଗଲି ଜନ୍ତୁମାନଙ୍କ ଭୟ । ଯେତେ ଉପରକୁ ଉଠିବ, ସକାଳର ସୂର୍ଯ୍ୟ ସେତେ ଉଜ୍ଜ୍ୱଳ ଦିଶିବ; କିନ୍ତୁ ପ୍ରାୟ ଦିନ ତିନିଟା ପରେ ଆଲୁଅ ପାଇବ କି ନା ସନ୍ଦେହ । ତେଣୁ ଟିକେ ତରବର ହେବାକୁ ପଡ଼ିବ ।"

ଅଜା ଦେଖିଲେ ଯେ ଦେବଯାନୀଙ୍କୁ ଏ ଯାଏଁ ଚକୋର ଚିନ୍ତା ଘାରୁଛି । ତେଣୁ ସେ କହିଲେ, "ମୁଁ ତୁମକୁ ଗୋଟାଏ ଭାରି କଉତୁକିଆ ପକ୍ଷୀ କଥା କହୁଛି ଶୁଣ ।"

ଦେବଯାନୀ ଓ ଆଦିତ୍ୟ ଆଗ୍ରହରେ ଚାହିଁ ରହିଲେ । ଅଜା କହି ଚାଲିଲେ, "ସେ ପକ୍ଷୀର ନାଁ ମୋନାଲ । ମୟୂରଠୁ ମଧ୍ୟ ଏ ପକ୍ଷୀଟି ଅଧିକ ସୁନ୍ଦର । ଏହାର ସ୍ଲେଟ, ଓସାରିଆ, ଚାରିକୋଣିଆ ଲାଞ୍ଜଟିଏ ଥିଲେ ମଧ୍ୟ ପରଗୁଡ଼ିକ ଚକ୍‌ଚକ୍, ସବୁଜ ଓ ନୀଳବର୍ଣ୍ଣ ।"

ଦେବଯାନୀ ପଚାରିଲା, "ମୋନାଲ କଥା କହୁ କହୁ ତୁମ ମୁହଁ ଏମିତି ଶୁଖିଯାଉଛି ?"

"ଦିନ ଥିଲା ଯେତେବେଳେ ତୁମେ ଗଛ ଡାଳରେ କେତେ ମୋନାଲ ପକ୍ଷୀ ବସିଥିବାର ଦେଖିପାରୁଥିଲ । କିନ୍ତୁ ଏବେ ଯଦି ଗୋଟିଏ ମୋନାଲ ପକ୍ଷୀ ନଜରରେ ପଡ଼ିଗଲା, ତେବେ ତୁମର ଭାଗ୍ୟ ବୋଲି ଜାଣିବ ।"

"ସେମାନେ କୁଆଡ଼େ ଉଭେଇ ଗଲେ ଯେ ?" ଦେବଯାନୀ ପଚାରିଲା ।

"ସେମାନେ ସବୁ ଇଂଲଣ୍ଡ ଚାଲିଗଲେ," ଅଜା ବିରସ ମନରେ କହିଲେ ।

"ତୁମେ ମଜା କରୁଛ ନା ? ପକ୍ଷୀମାନେ କ'ଣ ଇଂଲଣ୍ଡ ଯାଆନ୍ତି ?"

ଆଦିତ୍ୟ ପଚାରିଲା, "ସେମାନେ କ'ଣ ଏକା ସାଥିରେ ସଭିଏଁ ଚାଲିଗଲେ ? କେମିତି ? ସେମାନେ ତାଙ୍କ ଆପଣା ଦେଶରେ ରହିଥାଆନ୍ତେ—ନା କ'ଣ କହୁଛ ଅଜା ?"

ଅଜା କହିଲେ, "ବିଚରା ପକ୍ଷୀମାନେ କ'ଣ କରିଥାନ୍ତେ କହ । ଇଂରେଜ ମହିଳାମାନେ ଏ ପକ୍ଷୀର ମୟୂର ଚୂଳ ପରି ଚୂଳର ପରକୁ ସେମାନଙ୍କ ଟୋପିରେ ଲଗେଇ





ପିନ୍ଧିବାକୁ ମନକଲେ । ଦେଖୁ ଦେଖୁ ଏହା ଏମିତି ଏକ ଫେସନ ହୋଇଗଲା ଯେ ସଭିଏଁ ଏହାକୁ ଟୋପିରେ ଖଞ୍ଜି ପିନ୍ଧିବାକୁ ପସନ୍ଦ କଲେ । ତା'ପରେ ୱିଲସନ୍ ସାହେବ ଏହାକୁ ନେଇ ଗୋଟାଏ ବେପାର ଆରମ୍ଭ କରିଦେଲେ । ଏହି ପକ୍ଷୀମାନଙ୍କୁ ମାରି ସେମାନଙ୍କ ଚୂଳ ଇଂଲଣ୍ଡକୁ ପଠାହେଲା ଏବଂ ସେଥିରୁ ବହୁତ ଟଙ୍କା ରୋଜଗାର ହେଲା । ମଲା ଚଢ଼େଇଗୁଡ଼ିକ ଦେହରେ କାଠିକୁଟା ପୂରେଇ ତାକୁ ମଧ୍ୟ ବଜାରରେ ବିକିବାପାଇଁ ଛଡ଼ାଗଲା ।"

ଆଦିତ୍ୟ ପଚାରିଲା, "ଏମନ୍ତ ! ଆଚ୍ଛା ସେ ୱିଇଲସନ୍ ସାହେବ କିଏ ?"

ଅଜା ସାଙ୍ଗେ ସାଙ୍ଗେ କହିଲେ, "ଭଟଓ୍ୱାଗ୍ରକୁ ଦେଖ ! ଆମେ କେବେ ଦେଖି ନଥିବା ପକ୍ଷୀମାନଙ୍କ ବିଷୟରେ ସେ କହୁଛି । ପରେ ତୁମକୁ ୱିଇଲସନ୍ ସାହେବଙ୍କ କଥା କହିବି ।"

"ଭଟଓ୍ୱାଗ୍ର ! ବଡ଼ଭଇ ନାଁଟିଏତ ।" ଦେବଯାନୀ କହିଲା ।

ଅଜା କହିଲେ, "ବାପ, ଗୋଟାଏ ଜିନିଷକୁ ବାରମ୍ବାର ବ୍ୟବହାର କଲେ ତା'ର ଧାର ସରି ସରି ଗୋଲହୋଇଯାଏ । ଏ ପଥରଗୁଡ଼ାକ ଦେଖିଲ । ଏଠିସେଠି ଗଡ଼ ଗଡ଼ କେମିତି ଚିକ୍କଣ ଓ ପାଲିସ ହୋଇଯାଇଛନ୍ତି । ପାହାଡ଼ୀ ଝରଣା ଦେଇ ଭାସିଆସିଲା-ବେଳେ ସେଗୁଡ଼ିକ କ'ଣ ଏମିତି ଥିଲେ ବୋଲି ଭାବୁଛ ?" ଅଜା କହିବାକୁ ଲାଗିଲେ, "ଯଦି ପଥରର ଅବସ୍ଥା ଏମିତି ହୁଏ, ତେବେ ଶବ୍ଦର ଅବସ୍ଥା ବା କ'ଣ ନ ହେଉଥିବ ?"

"କ'ଣ କହୁଛ !" ପିଲାଏ ଚାଟକା ହୋଇ ଚାହିଁ ରହିଲେ ।

"କାହିଁକି ବା ଏମିତି ନ ହେବ ? ଆମେ ତ ପୁଣି ଶବ୍ଦଗୁଡ଼ାକୁ ଜିଭରେ ଗଢ଼ୁଛୁ । ସେଗୁଡ଼ାକର ଧାତୁଆ ଗୁଣ ଏଥିରେ ଚାଲିଯାଉ ନ ଥିବ କାହିଁକି ? ଅପାଠୁଆ ଲୋକେ ଶବ୍ଦଗୁଡ଼ାକୁ ଜଗିରଖି ବ୍ୟବହାର କରନ୍ତି, ଉଚ୍ଚାରଣ କରନ୍ତି । ଅପାଠୁଆ ଲୋକେ ଠିକଣା ଉଚ୍ଚାରଣ କରିପାରନ୍ତି ନାହିଁ । ତେଣୁ 'ଭାସ୍କରପୁରୀ' ନାଁଟା ହୋଇଗଲା 'ଭଟଓ୍ୱାରି' ।" ପିଲାମାନେ ହସି ହସି ଗଡ଼ିଗଲେ ।

"ଏଇ ଜାଗା ବିଷୟରେ ଗୋଟିଏ କାହାଣୀ ଅଛି । ସୂର୍ଯ୍ୟଙ୍କର ଆଉ ଗୋଟିଏ ନାଁ ହେଉଛି ଭାସ୍କର । ଏହି ଜାଗାରେ ସୂର୍ଯ୍ୟ ଥରେ କୁଆଡ଼େ ଶିବଙ୍କୁ ସନ୍ତୁଷ୍ଟ କରିବାକୁ ସଂକଳ୍ପ କରିଥିଲେ । ଏଠି ଶିବଙ୍କ ପାଇଁ ଗୋଟିଏ ମନ୍ଦିର ତୋଳା ହୋଇଛି । ଅନ୍ୟାନ୍ୟ ତୀର୍ଥ ଜାଗା ଭଳି ଏଠି ମଧ୍ୟ ଆଗେ ଲୋକେ ଶିବଙ୍କୁ ପୂଜା କରୁଥିଲେ । ସାଧୁସନ୍ଥମାନେ ଏଇଠି ଧ୍ୟାନ, ଜପତପ କରୁଥିବାରୁ ଏହି ଜାଗାଗୁଡ଼ିକ ତୀର୍ଥ ପାଲଟିଯାଇଛି ।"

ତା'ପରେ ହଠାତ୍ ଅଜା ହାତ ଦେଖାଇ କହିଲେ, "ଦେଖ ପିଲେ, ଆମେ 'ଗଂଗନାନି' ପାଖକୁ ଆସିଗଲୁଣି । ଆଗ କାଳରେ ଯେତେବେଳେ ଲୋକେ ଚାଲି ଚାଲି ଆସୁଥିଲେ ସେମାନେ ଏଇ ଗଂଗନାନି ପାଖରେ ରହୁଥିଲେ । ଗଂଗା ଆରପଟେ ସେଇଠି ଲୋକେ ଗାଧୋଇ ଯାଉଥାଆନ୍ତି ।"

"ଉଷ୍ଣପ୍ରସ୍ରବଣ କ'ଣ ଅଜା ?" ଦେବଯାନୀ ପଚାରିଲା ।





"ପାହାଡ଼ମାନଙ୍କରେ ଉଷୁମ ପାଣିର ଝରଣା ବହୁଥାଏ । ସେହି ପାଣି ବହି ଆସି କୁଣ୍ଡ ଓ ଗ୍ରେଟ ହ୍ରଦରେ ପରିଣତ ହୋଇଯାଏ । ଅସଲ କଥାହେଲା ପାହାଡ଼ରେ ଗାଧୋଇବା ପାଇଁ ସବୁ ବ୍ୟବସ୍ଥା ଅଛି—ଉଷୁମ ପାଣିରେ ଗାଧୋଇବାକୁ ଚାହିଁଲେ ଉଷୁମ ପାଣିର ଝରଣା ଅଛି, ଥଣ୍ଡା ପାଣି ଚାହିଁଲେ ଗଂଗା ଅଛି ।"

ଗଂଗନାଣି ପହଞ୍ଚିବା ମାତ୍ରେ ଆଦିତ୍ୟ ବସ୍ ଉପରୁ ଖପ୍ କରି ଡେଇଁପଡ଼ି ଗଙ୍ଗାକୂଳକୁ ଦଉଡ଼ିଲା । ଖୁବ୍ ଜୋର୍‌ରେ ବହିଯାଉଥିବା ଗଙ୍ଗାନଦୀର ସୁଅ ଚକ୍ ଚକ୍ ଦିଶୁଥାଏ ।

ଅଜା କହିଲେ, "ଆରପାରିରେ ମଧ୍ଯ ଗୋଟିଏ ଉଷ୍ଣପ୍ରସ୍ରବଣ ଅଛି ଏବଂ ପରାଶର ଋଷିଙ୍କର ଆଶ୍ରମ ମଧ୍ଯ ଅଛି । ତାହା ବ୍ୟାସଦେବଙ୍କ ଜନ୍ମସ୍ଥାନ ବୋଲି କଥିତ । ମହାଭାରତ ଲେଖକ ବ୍ୟାସ । ଏଇଠି ସତ୍ୟବତୀ ଓ ଶାନ୍ତନୁ ବାହା ହୋଇଥିଲେ ।"

"ଓହୋ, ମୁଁ ସେ କାହାଣୀଟା ଜାଣିଛୁ । ସତ୍ୟବତୀଙ୍କ ବାପା କହିଲେ, 'ମୋ ଝିଅର ପୁଅ ସିଂହାସନରେ ବସିବ ।' ଶାନ୍ତନୁଙ୍କ ଦୁଃଖ ଦେଖି ତାଙ୍କ ପୁଅ ଭୀଷ୍ମ ସଙ୍କଳ୍ପ କଲେ ଯେ ସେ ଆଉ କେବେ ବାହା ହେବେନାହିଁ । ଆଉ ତା'ପରେ···"

କାହାଣୀଟା ଶୁଣେଇ ଅଜାଙ୍କୁ ଖୁସି କରେଇ ଦେବାକୁ ଆଦିତ୍ୟ ମନକରିଥିଲା; କିନ୍ତୁ ଦେବଯାନୀ ମଝିରୁ କହିଉଠିଲା, "ଆଉପଟେ ଆଉ କେତୋଟା ଉଷ୍ମପ୍ରସ୍ରବଣ ଅଛି ଅଜା ?"

ଅଜା କହିଲେ, "ଆଉ ଦୁଇଟା—ସୂର୍ଯ୍ୟକୁଣ୍ଡ ଓ ବ୍ୟାସକୁଣ୍ଡ । ସେଗୁଡ଼ିକୁ ଦେଖିଲେ ତମକୁ ଲାଗିବ ଯେ ପ୍ରକୃତି ତୁମକୁ ହାତଠାରି ଡାକୁଛି—ଆସ, ଏଇଠି ଦେହଟାକୁ ଟିକେ ତାଜା କରିନିଅ । ପାହାଡ଼ ପାଖରେ, ଭଗୀରଥୀ ତଟରେ ଆଶ୍ରମଗୁଡ଼ିକ ଖୁବ୍ ଦର୍ଶନୀୟ । ବହୁତ ବର୍ଷ ତଳେ ଋଷିମାନେ ଏଇ ଜାଗାରେ କେତେ ନା କେତେ ଆଶ୍ରମ ତିଆରି କରିଥିଲେ । ବୁଝିଲ ପିଲେ, ସେହି ଋଷିମାନେ ଆମର ପୂର୍ବପୁରୁଷ । ଏମିତି ସୁନ୍ଦର ପାହାଡ଼ ପର୍ବତଘେରା ପରିବେଶରେ ସେମାନେ ସାରା ଜୀବନ କଟେଇ ଦେବାକୁ ଚାହୁଁଥିଲେ; କିନ୍ତୁ କାଳକ୍ରମେ ଏସବୁ ଜାଗାରେ ଜନବସତି ଗଢ଼ିଉଠିବାରୁ ସେମାନେ ଯାଇ ସମତଳ ଅଞ୍ଚଳରେ ବସବାସ କଲେ । ଏହିଭଳି ଆଶ୍ରମମାନଙ୍କୁ ଆସିଲେ ନିଜ ଘରକୁ ଆସିଲା ଭଳି ଲାଗେ···ଆରେ ହେ, ତୁ କ'ଣ ଢୁଳେଇଲୁଣି ? ହରସିଲ ପହଞ୍ଚିବା ଯାଏଁ ଟିକଏ ରହିଯାଆ । କେଡ଼େ ସୁନ୍ଦର ଜାଗା ଜାଣିଛୁ ? କାଶ୍ମୀରର ପହଲଗାମ୍ ସାଙ୍ଗରେ ଲୋକେ ଏହାକୁ ସମାନ କରନ୍ତି ।"

ଦେବଯାନୀ ଓ ଆଦିତ୍ୟ ଏତେ ହାଲିଆ ହୋଇଯାଇଥିଲେ ଯେ ସେମାନଙ୍କ ଆଖି ପଡ଼ିଯାଉଥିଲା । ହରସିଲରେ ପହଞ୍ଚୁ ନ ପହଞ୍ଚୁଣୁ ସେମାନେ ସିଧା ଶେଯରେ ପଡ଼ିଗଲେ । ଶୋଇବା ଆଗରୁ ପିଲାଏ କିଛି ଫଳ ଆଉ କିଛି ଖାଦ୍ୟ ଖାଆନ୍ତୁ ବୋଲି ଅଜା ବଳେଇଲେ । ସେ କହିଲେ, "ଏଇ ଥଣ୍ଡା ଜାଗାରେ ଖାଲି ପେଟରେ କିଛି ନ ଖାଇ ଜମା ଶୁଅନାହିଁ ।" ଟିକଏ କ'ଣ ପାଟିରେ ପୂରେଇ ପିଲେ ଶୋଇଗଲେ ।

ଏଡ଼େ ବେଗେ ତୁଷାର ପଡ଼ିବା ଋତୁ ଆସି ନଥାଏ, କିନ୍ତୁ ରାତିରେ ହରସିଲରେ ପ୍ରଥମ ତୁଷାର ବର୍ଷା ହୋଇଗଲା ପାହାଡ଼ ଶିଖରେ, ସେହି ଋତୁର ପ୍ରଥମ ତୁଷାରପାତ ହେଲା । ଆଦିତ୍ୟ ସକାଳୁ ଉଠି ଝରକା ବାଟେ ଦେଖୁ ଦେଖୁ ଦେବଯାନୀକୁ ଉଠେଇ ଉଚ୍ଚାଟ ହୋଇ କହିଲା—"ଦେଖ୍, ଦେଖ୍, ପାହାଡ଼ ଚୂଡ଼ାରେ କେମିତି ତୁଷାର ପଡ଼ିଛି ।"



ସୁନେଲି ସୂର୍ଯ୍ୟକିରଣ ଆକାଶରୁ ବିଚ୍ଛୁରିତ ହୋଇ ପଡ଼ୁଥିଲା । ପଲେ ମେଣ୍ଢା ଦେଖି ଆଶ୍ଚର୍ଯ୍ୟ ସେମାନଙ୍କ ସାଙ୍ଗରେ ଖେଳିବାକୁ ଦୌଡ଼ିଗଲା । ମେଣ୍ଢା ଜଗୁଆଳକୁ କହି ସେ ଗୋଟିଏ ମେଣ୍ଢାକୁ କୁଣ୍ଢେଇ ଧରି ତା' ସାଥେ ସାଥେ ଚାଲିଲା । ସେ ମେଣ୍ଢା ଜଗୁଆଳକୁ

ପଚ୍ଛରିଲା, "ହଇହୋ, ଏ ପଡ଼ିଆରେ ଟିକେ ସେମାନଙ୍କୁ ଖୋଲାମେଲାରେ ଦଉଡ଼ାଦଉଡ଼ି କରିବାକୁ ଛାଡ଼ୁନ କାହିଁକି ?"

ପାହାଡ଼ିଆ ଅଞ୍ଚଳର ଦୁରଦୁରାନ୍ତରୁ ଆସିଥିବା ଏହି ମେଣ୍ଢା ଜଗୁଆଳି ଗୋଟାଏ ଅଲଗା ଭାଷାରେ କଥା କହୁଥାଏ । ସେ ଠାରିକରି କହିଲା ଯେ ବେଶି ଚ୍ଛଲବୁଲ କଲେ ସେମାନେ ହାଳିଆ ହୋଇଯିବେ, କାହିଁକି ନା ଆହୁରି ବହୁତ ବାଟ ସେମାନଙ୍କୁ ଚ୍ଛଲିବାକୁ ପଡ଼ିବ ।

ଦେବଯାନୀ ତା' ଭାଇ ପାଖକୁ ଦଉଡ଼ିଯିବ ବୋଲି ବାହାରୁଥିଲା, ମାତ୍ର ମେଣ୍ଢା ଜଗୁଆଳିକୁ ଚ୍ଛହିଁଦେଇ ଅଟକିଗଲା । ଅଜାଙ୍କ ହାତକୁ ଜାବୁଡ଼ି ଧରି ପଚ୍ଛରିଲା, "ଅଜା, ଏ ଲୋକଟା ଏତେ ଭୟଙ୍କର ଦିଶୁଛି—ତା ଜଟା, ଦାଢ଼ି ଦେଖିଲେ ଡର ଲାଗୁଛି ।"

ଅଜା ବୁଝେଇ କହିଲେ, "ସେ ଗଦ୍ଦି ଗଡ଼େରି । ଉଚ୍ଚ ଉଚ୍ଚ ପାହାଡ଼ରେ ଯେତେବେଳେ ତୁଷାର ପଡ଼ିବାକୁ ଆରମ୍ଭ କରେ, ଇଏ ସେହି ଅଞ୍ଚଳ ବାସିନ୍ଦାମାନଙ୍କର ମେଣ୍ଢାମାନଙ୍କୁ ଆଣି ତଳିଆ ଜାଗାମାନଙ୍କରେ ଚରାଏ ।"



"ସେ କାହିଁକି ଅନ୍ୟ ଲୋକଙ୍କ ମେଣ୍ଢା ଆଣେ ? ସେ ସିନା ତା' ନିଜ ମେଣ୍ଢା ଆଣନ୍ତା ?"

"ତା'ର ଲାଭ ବୋଲି ସେ ସେଇଆ କରେ । ତାକୁ ପଇସା ମିଳେନାହିଁ, ପଇସା ବଦଳରେ ମେଣ୍ଢା ଛୁଆଟିଏ ପାଇଥାଏ । ଏହିଭଳି କାଳକ୍ରମେ ସେ ଆପଣାର ମେଣ୍ଢା ପଲଟିଏ କରିଦିଏ । ଆଜି ଏଇ ପାହାଡ଼ ଅଞ୍ଚଳରେ ସମ୍ପଦ କହିଲେ ମେଣ୍ଢା ଓ ଛେଳି ।"

ଦେବଯାନୀ କଥାକାଟି କହିଲା, "ଆମେ ତ ସମ୍ପଦ କହିଲେ ଟଙ୍କା ପଇସାକୁ ବୁଝୁ ।"

"ଟଙ୍କା ପଇସା ନେଇ ସେ ଭଲା କ'ଣ କରିବ ? ଯେଉଁ ଟଙ୍କା ପଇସା ବଦଳରେ ତୁମକୁ ଖାଇବାକୁ ନ ମିଳିଲା ସେ ଟଙ୍କା ପଇସା ଥାଇ କି ଲାଭ ? ମେଣ୍ଢା ଓ ଛେଳି କେତେ ପ୍ରକାର କାମରେ ଲାଗିପାରନ୍ତି । ତୁମେ ତାଙ୍କ କ୍ଷୀର ପିଇପାରିବ । ତାଙ୍କ ଲୋମରୁ ଶାଲ ହୋଇପାରିବ । ତାଙ୍କ ଚମଡ଼ାରୁ କମ୍ବଳ ଭଳି ଘୋଡ଼େଇ ହେବା ଜିନିଷ ହୋଇପାରିବ । ଏବେ ତୁମେ ବୁଝିଲଟି, ଏମାନଙ୍କ ପାଇଁ ଛେଳି ମେଣ୍ଢା କେତେ ମୂଲ୍ୟବାନ୍ ? ସେଇଥିପାଇଁ ଯେଉଁ ଲୋକର ଛେଳିମେଣ୍ଢା ପଲ ଯେତେ ବଡ଼, ଲୋକେ ତାକୁ ସେତେ ଧନୀ ବୋଲି ବିଚାରନ୍ତି । ଆମ ସମତଳ ଅଞ୍ଚଳରେ ମେଣ୍ଢା ଜଗୁଆଳି ବୋଇଲେ ଆମେ ଯାହା ବୁଝୁ, ଏଇ ପାହାଡ଼ିଆ ଅଞ୍ଚଳରେ ଗଡ୍‌ଡ଼ୀ କହିଲେ ସେଇୟା ବୁଝାଏ ।"

ଦେବଯାନୀ କହିଲା, "ଏବେ ମତେ ସେ ଲୋକଟାକୁ ଦେଖିଲେ ଡର ଲାଗୁନାହିଁ ।"

"ସେମାନେ ଜଙ୍ଗଲର ଉପର ଅଞ୍ଚଳରେ ରହନ୍ତି, ସଭ୍ୟ ଦୁନିଆଠାରୁ ଦୂରରେ, ସେଇଥିପାଇଁ ଏମିତି ଜଙ୍ଗଲିଆ ଦିଶୁଛନ୍ତି । ଖରାତରରେ ବୁଲିବୁଲି ତାଙ୍କ ଦେହର ରଙ୍ଗ ଏମିତି ନୁଖୁରା ମାଖରା ଦିଶୁଛି । ସେମାନେ ଏକ ପ୍ରକାର ଯାଯାବର, ସବୁବେଳେ ଏ ଜାଗାରୁ ସେ ଜାଗା ଘୂରି ବୁଲୁଥା'ନ୍ତି । ତୁ ଯଦି ତା' ପାଖକୁ ଯିବୁ, ତେବେ ଦେଖିବୁ ଯେ ତା' ମୁହଁଟି ସରଳିଆ, ଆଖି ଯୋଡ଼ିକ ନରମ । ସେଇଥିପାଇଁ ଆଦିତ୍ୟକୁ ତା' ସାଙ୍ଗ ଭଲ ଲାଗୁଛି ।"

ତା'ପରେ ଅଜା ପିଲାମାନଙ୍କୁ ଗୋଟିଏ ସେଓ ବଗିଚାକୁ ନେଲେ । ସେ କହିଲେ, "ଏଇଟା ହେଉଛି ଭାରତରେ ରୋପିତ ପ୍ରଥମ ସେଓ ବଗିଚା । ଏହି ସେଓଗୁଡ଼ିକ ଆକାରରେ ସାନ ସିନା, ହେଲେ ଭାରି ରସାଳ, ଭାରି ସୁଆଦିଆ ।"

ଏହି ବଗିଚାଟି କିଏ ରୋପଣ କରିଥିଲା ସେକଥା ଜାଣିବାକୁ ଦେବଯାନୀର ମନ ହେଲା । ଅଜା ଉତ୍ତର ଦେଲେ, "ଉଇଲସନ୍ ସାହେବ । ଏ ବଗିଚା ହେବାର ଶହେ ବର୍ଷ

ହେଲଣି । ପ୍ରଥମେ ସେ ଇଂଲଣ୍ଡରୁ ସେଓଗଛ ଅଣାଇଥିଲେ । ସେ ଜାଣିଥିଲେ ଯେ ଥଣ୍ଡା ଜଳବାୟୁରେ ସେଓ ଗଛ ଖୁବ୍ ଭଲ ବଢ଼େ । ଏବେ ଆମର ଅନେକ ସେଓ ବଗିଚା ହେଲଣି ଏବଂ ଖୁବ୍ ବଢ଼ିଆ ସେଓ ମଧ୍ୟ ଆମର ଏଠି ଫଳୁଛି ।"

ଦେବଯାନୀ ପଚାରିଲା, "ଆଚ୍ଛା, ୱିଲସନ୍ ଆଉକିଛି ନୂଆଗଛ ଅଣାଇଥିଲେ କି ?"

ଅଜା ଟିକିଏ ଚୁପ୍ ରହିଲେ ପରେ ହସ ହସି କହିଲେ, "ହଁ, ସେ ଏମିତି ନୂଆ ଜିନିଷ ଆଣିଥିଲେ ଯାହା ନଥିଲେ ତୁମକୁ ରୁଟି ରୁଚନ୍ତା ନାହିଁ ।"

"ବିଲାତି ଆଳୁ" ଆଦିତ୍ୟ ଚଟ୍‌ପଟ୍ ଉତ୍ତର ଦେଲା ।

ଅଜା କହିଲେ, "ଠିକ୍ କହିଛୁ । ଆଜିକାଲି ଆମର ଯଥେଷ୍ଟ ଆଳୁ ଫସଲ ହେଉଛି । ପାହାଡ଼ିଆ ଅଞ୍ଚଳରେ ବିଲାତି ଆଳୁ ହେଲା ଲୋକଙ୍କର ନିତିଦିନିଆ ଖାଦ୍ୟ । ପହିଲେ ପହିଲେ ଲୋକେ ବିଲାତି ଆଳୁ ଗଛ ଲଗାଇବାକୁ ଚାହୁଁନଥିଲେ; କିନ୍ତୁ କ୍ରମଶଃ ୱିଲ୍‌ସନ୍ ସାହେବ ବିଲାତି ଆଳୁ ଚାଷ କରିବାପାଇଁ ସେମାନଙ୍କୁ ପ୍ରବର୍ତ୍ତାଇଲେ ।"

ଏତିକିବେଳେ ଆଦିତ୍ୟ କହିଉଠିଲା, "ଜାଣିଛ ନା ଅଜା, ଆଳୁଚାଷ କରିବାର ଢଙ୍ଗଟା ନିଆରା । ସିଆର କାଟିବ, ତାକୁ ମାଟିରେ ପୋତାଇବ, ତା' ପରେ ଯାଇ ଆଳୁ ଗଛ ପୋତିବ । ଆଳୁଗଛକୁ ଯଦି ଗନ୍ଧକ କିମ୍ବା ଆଉ କେଉଁ ଶସ୍ୟଭଳି ଲଗେଇଦେବ ନା ତେବେ ସେ ଜମା ଉଠିବ ନାହିଁ ।"

ତହୁଁ ଦେବଯାନୀ କହିଲା, "ଦେଖୁଛି ୱିଲସନ୍ ସାହେବ ତ ମନ୍ଦ ଲୋକ ନୁହେଁ । ମୁଁ ଭାବିଥିଲି ଖାଲି ପକ୍ଷୀବଂଶ ନିପାତ କରିବାରେ ସେ ପାରିବାର ।"

"ଖାଲି ସେତିକି ନୁହେଁ, ସେ ଏମିତି ବିଚକ୍ଷଣ ବୁଦ୍ଧିମାନ ମଣିଷଟିଏ ଯେ ପାହାଡ଼ିଆ ଲୋକଙ୍କ ପାଇଁ ଆଉ ଗୋଟେ କଥା ମଧ୍ୟ କରିଦେଇଛନ୍ତି ।"

"କଣ କରିଛନ୍ତି" ପିଲାଏ ପଚାରିଲେ ।

"ବସ୍‌ରେ ଆସିଲାବେଳେ ଗଙ୍ଗାରେ ଭାସୁଥିବା କାଠବସ୍ତୁ ତୁମ ନଜରରେ ପଡ଼ୁଛି କି ?"

"କାଠର କେତେ ଚକ୍ରା ଦେଖିଲୁ । ଏହାକୁ ମଧ୍ୟ କ'ଣ ସିଏ କରିଥିଲେ ?"

"ହଁ, ଭାବିଲ ଦେଖି, ସେ କେମିତି ପର୍ବତ ତଳକୁ ଏଡ଼େ ଏଡ଼େ କାଠଖଣ୍ଡ ସବୁ ଆଣି ପାରିଥିଲେ ? ଆଗେ ଲୋକେ କାଠସବୁ ପିଠିରେ ବୋହିଇ କରି ଆଣୁଥିଲେ । ତା'ଛଡ଼ା ପାହାଡ଼ ତଳକୁ ଆସିଲାବେଳକୁ କାଠସବୁ ପାଗିଯାଇ ଶୁଖି ଆଣ୍ଠ ହୋଇଯାଏ ।"

“ସେ ଆଉ କ’ଣ କରିଥିଲେ ଅଜା ?”

“ତମେ ଗୋଟାଏ ଝୁଲା ପୋଲ୍ ଦେଖିଲଟି ? ଦୁ’ପଟର ପାହାଡ଼କୁ ଦଉଡ଼ି ବାନ୍ଧି ଯୋଡ଼ା ଯାଇଛି ଏବଂ ମଝିରେ କାଠଚକ୍ଟାଗୁଡ଼ିକୁ ଖଞ୍ଜି ଦିଆଯାଇଛି । ପାଦ ପକେଇଲେ ଚକ୍ଟାଗୁଡ଼ାକ ଝୁଲିଲା ପରି ଲାଗିବ, ହେଲେ ଟିକିଏ ଅଭ୍ୟାସରେ ପଡ଼ିଗଲେ ତମେ ବେଶ୍ ଖୁସିରେ ପୋଲଟି ପାର ହୋଇ ଚାଲିଯିବ ।”

ପିଲେ ଭାଇମାର ହସି ହସି କହିଉଠିଲେ “ବାଃ ବେଶ୍ ମଜା ତ !”

“ପହିଲେ ଲୋକେ ଏ ପୋଲରେ କେମିତି ଚାଲିବେ ଭାବି ଚିନ୍ତା ହେଉଥିଲେ । କିନ୍ତୁ ଜଇଲ୍‌ସନ୍ ସାହେବ ତାଙ୍କ ମନରୁ ଡର କାଢ଼ି ନେବା ପାଇଁ ଗୋଟେ ଉପାୟ ପାଞ୍ଚିଲେ ।



ପର୍ବତମାନଙ୍କରେ ଟଟ୍ଟୁଘୋଡ଼ାଙ୍କୁ ଜିନିଷ ନେବା ଆଣିବା କରିବା କାମରେ ଲଗାଯାଏ । ଏପରିକି ଅଣଓସାରିଆ ରାସ୍ତା ଓ ବରଫଜମାଟ ଭଷ ଜାଗାରେ ଏମାନେ ପାଦ ଖସେଇ ଯିବା ଆସିବା କରିବାରେ ବେଶ୍ ପାରିବାର । ଉଇଲ୍‌ସନ୍ ସାହେବ ନିଜେ ଗୋଟିଏ ଟଟ୍ଟୁ ଘୋଡ଼ାରେ ପଇଁତରା ମାରୁଥାଆନ୍ତି । ଲୋକଙ୍କ ମନରୁ ଡର ଛଡ଼େଇବା ପାଇଁ ଉଇଲ୍‌ସନ୍ ସାହେବ ଝୁଲା ପୋଲ ଉପରେ ବେଶ୍ ବେଗରେ ଘୋଡ଼ା ଛୁଟେଇ ଦେଇ ସବୁଙ୍କୁ ତାଟକା କରିଦିଅନ୍ତି ।"

ଦେବଯାନୀ ଓ ଆଦିତ୍ୟଙ୍କୁ ବେଶ୍ ମଜା ଲାଗୁଥାଏ । "ଉଇଲ୍‌ସନ୍ ସାହେବଟା ନିଶ୍ଚୟ ଭାରି ମଜାଦାର ଲୋକ ହୋଇଥିବ," ପିଲାମାନେ କହିଲେ ।



ଅଜା କହିଲେ, "ଝୁଲ ପୋଲଗୁଡ଼ିକ ଏବେ ମଧ୍ୟ ଲୋକଙ୍କ କାମରେ ଲାଗୁଛି ।"

"ଉଇଲସନ୍ ସାହେବ କ'ଣ ଇଂରେଜ ଥିଲେ ?" ଆଦିତ୍ୟ ପଚାରିଲା ।

"ସେ ଇଷ୍ଟ ଇଣ୍ଡିଆ କମ୍ପାନୀ ପାଇଁ କାମ କରୁଥିଲେ । ଏ ପଟରେ ଭ୍ରମଣ କଲାବେଳେ ସେ ଏ ଜାଗାକୁ ଭଲପାଇ ବସିଲେ ଓ ଏଇଠି ରହିଯିବାକୁ ଠିକ୍ କଲେ । ଖାଲି ସେତିକି ନୁହେଁ, ସ୍ଥାନୀୟ ମୁଖ୍‌ବା ଗାଆଁର ଗୋଟିଏ ଝିଅକୁ ମଧ୍ୟ ବାହାହେଲେ । ତାଙ୍କୁ କାମରେ ଅନେକ ସମୟରେ ଏମିତି ଦୂରଦୂର କରିବାକୁ ପଡ଼ୁଥିଲା, ତେଣୁ ଏ ଅଞ୍ଚଳର ଜଙ୍ଗଲ୍ ବଙ୍ଗଳା ସବୁ ବିଶ୍ରାମ ନେବାପାଇଁ ସେ ତିଆରି କରିଥିଲେ । ତୁମେମାନେ ଦେଖିବ ସେଗୁଡ଼ିକ ଭାରି ସୁନ୍ଦର ବଛା ବଛା ଜାଗାରେ ରହିଛି ।"

ଦେବଯାନୀ କହିଲା, "ସେ ନିଶ୍ଚୟ ଧନୀ ଲୋକ ହୋଇଥିବେ ।"

"ସେ ଧନୀ ନିଶ୍ଚୟ ଥିଲେ । ତାଙ୍କର ନିଜର ସ୍ୱତନ୍ତ୍ର ମୁଦ୍ରା ଥାଏ । ତାଙ୍କ ପାଖରେ ପଇସା ସରିଗଲେ ସେ ମୂଲିଆମାନଙ୍କୁ ଆପଣା ମୁଦ୍ରା ଦିଅନ୍ତି । ଏ ମୁଦ୍ରା ମଧ୍ୟ ବଜାରରେ ଅନ୍ୟ ପ୍ରଚଳିତ ମୁଦ୍ରାଭଳି ଚଳୁଥାଏ । ସେ ମୁଦ୍ରାରୁ ଗୋଟାଏ କେଉଁଠି ବି ତୁମକୁ ମିଳିଯାଇପାରେ । ଏବେ ଆସ, ଅଂଧାର ହେଲାଣି, ଘରକୁ ଯିବା ।"

ଜଂଗଲ୍ ବଂଗଳାଟା ପାଖେଇ ଆସିବାରୁ ଅଜା ଅଟକି ଯାଇ କହିଲେ, "ଆମେ ଯେଉଁ ବଂଗଳାରେ ରହିବାକୁ ଯାଉଛେ, ସେଠି ଗୋଟେ ଫଳକ ଅଛି । ସେଥିରୁ ଜଣାଯାଉଛି ଯେ ଏ ବଂଗଳାଟି 1864ରେ ତିଆରି ହୋଇଥିଲା । ତମେ କହିଲ, ଏ ବଂଗଳା କେତେ ବର୍ଷର ପୁରୁଣା ? ହିସାବ କଲ, ଚଟାପଟ କର, ଦେଖିବା ଦୁହିଁଙ୍କ ଉତ୍ତର ମିଶୁଛି କି ନାହିଁ । ମନେ ରଖିଥାଅ ତମ ଅଙ୍କଜ୍ଞାନ ପରୀକ୍ଷା ହେଉଛି ।"

କିନ୍ତୁ ଆଦିତ୍ୟ ପଚାରିବାକୁ ଲାଗିଥାଏ, "ଅଜା, ମୁଖ୍‌ବା ଗାଆଁଟା କୋଉଠି ?"

"ମୁଖ୍‌ବା ଏ ଅଞ୍ଚଳର ସବୁଠାରୁ ଶେଷରେ ଥିବା ଉଚ୍ଚ ଗାଆଁ । ଗଂଗୋତ୍ରୀର ପଣ୍ଡା ପୂଜାରୀମାନେ ସେଇଠି ରହନ୍ତି । ଗଂଗୋତ୍ରୀ ଯେତେବେଳେ ତୁଷାରରେ ଭରିଯାଏ, ସେତେବେଳେ ସେଠି ଗଂଗାପୂଜା ହୁଏ । ଏହାର ମୂଳ ନାଁ ହେଉଛି ମୁଖୀମଠ । ପ୍ରାଚୀନ କାଳରେ ମାତଂଗ ମହର୍ଷି ଓ ମାର୍କଣ୍ଡେୟ ଋଷି ଏଇଠି ଧ୍ୟାନ କରୁଥିଲେ ।"

ଆଦିତ୍ୟ ପଚାରିଲା, "ମନ୍ଦିର ଏଇଠି, ସେଠି କେମିତି ଗଙ୍ଗାପୂଜା ହେଉଥିଲା ଅଜା ?"

ଅଜା ବୁଝେଇ କହିଲେ, "ଦୀପାବଳି ବେଳକୁ ହେଉଳ ଦେହରେ ତୁଷାର ପଡ଼ିବା



ଉଇଲସନ୍

ଆଗରୁ ଗଂଗାଦେବୀଙ୍କ ମୂର୍ତ୍ତିକୁ ପାଲିଙ୍କିରେ ବସେଇ ମୁଖ୍‌ବା ଗାଆଁକୁ ନିଆଯାଏ । ସେଦିନ ସେ ମନ୍ଦିର ପାଖରେ ଏମିତି ଗହଳି ଚହଳି ହୁଏ ଯେ ମନେହୁଏ ସତେ ଯେମିତି ଝିଅଟିଏ ବାପଘରୁ ବିଦା ହେଉଛି । ସକାଳୁ ଆସି ରୁଣ୍ଡ ହୋଇଥିବା ସବୁ ମଣିଷ ଲୁହ ଛଳ ଛଳ ଆଖିରେ ଗଂଗାମାଆ କେମିତି ଶୀଘ୍ର ଲେଉଟି ଆସିବେ ସେଥିପାଇଁ ସଭିଏଁ ପ୍ରାର୍ଥନା କରୁଥାଆନ୍ତି । ସେମାନେ ପାଲିଙ୍କି ପଛେପଛେ କେତେ ବାଟ ବଳେଇ ଦେବାକୁ ଯାଆନ୍ତି ।"

ଅଜା କହିଚାଲିଥାଆନ୍ତି, "ଆଗକାଳରେ ମୁଖ୍‌ବା ସହରରେ ସବୁବେଳେ ଭିଡ଼ ଲାଗି ରହୁଥାଏ । ତିବ୍ବତ ଓ ଭାରତ ଭିତରେ ଚାଲିଥିବା ବାଣିଜ୍ୟର ଏ ଗୋଟାଏ ପେଣ୍ଠ ଜାଗା ।"

ହର୍ସିଲ ଏହାର ଦ୍ୱାରପଥ । ମୂଲ୍ୟବାନ୍ ମଣିମୁକ୍ତା, କମ୍ବଳ, ଦାମିକା ଗାଲଗ୍ ଓ ଶାଲର କାରବାର ଚାଲିଥାଏ । ରଂଗବେରଂଗର ସୁନ୍ଦର, ଖାଣ୍ଟି ପଶମ ତିଆରି ଗାଲଗ୍-ଗୁଡ଼ିକ ଖୁବ ଉତ୍କୃଷ୍ଟ । ଉଲ୍ ମଧ୍ୟ ଆମଦାନୀ ହୋଇ ଆସେ ଏବଂ ସ୍ଥାନୀୟ ଲୋକେ ସେଥିରେ ବୁଣାକାମ କରନ୍ତି । ଏ ଥିଲା ତିବ୍ବତକୁ ବାଣିଜ୍ୟ ପଥ । ବର୍ତ୍ତମାନ ବାଣିଜ୍ୟ କାରବାର ବନ୍ଦ ହୋଇଯାଇଛି । ଏବେ ତା' ବଦଳରେ କ'ଣ ଚାଲିଛି ବୋଲି ଭାବୁଛ ?"





"ଗୋଟିଏ ସେନା ଛାଉଣୀ", ଆଦିତ୍ୟ ଚଟାପଟ୍ ଉତ୍ତର ଦେଲା ।

"ଠିକ୍ କହୁଛୁ, କିନ୍ତୁ ଚରଖା ଓ ତମ୍ବୁଗୁଡ଼ିକ ଉପରେ ଧୂଳି ଜମିଗଲାଣି ।"

ତହୁଁ ଦେବଯାନୀ ତା' ବେକରେ ଲମ୍ବିଥିବା ହାରଟିକୁ ଅନେଇ କହିଲା, "ମୋ ପାଇଁ କିଛି ସୁନ୍ଦର ରଂଗୀନ ପଥର ଓ ମୁକ୍ତା ଆଣିଦିଅ ନା ଅଜା ! ନିଶ୍ଚୟ ତ ମିଳୁଥିବ ।"

ତା' ଆରଦିନ ପାହାନ୍ତାରୁ ସେମାନେ ଗଂଗୋତ୍ରୀ ଆଡ଼କୁ ଚାଲିଲେ । ଅଜାଙ୍କଠାରୁ ଜଣାଗଲା ଯେ ଆଗେ ଏ ବାଟଦେଇ ଗଲାବେଳେ ଗଂଗା ବହିଯିବାର ଦିଶୁଥାଏ । ଏଇଠି ସେ ନଦୀର ନାମ ଥିଲା ଜାହ୍ନବୀ । ଏଇଠି ଥିଲା ଜହ୍ନୁମୁନିଙ୍କର ଆଶ୍ରମ । ପୁରାଣରେ ଏ ବିଷୟରେ କାହାଣୀଟିଏ ଅଛି ।



"ପୁରାଣ ମାନେ କ'ଣ ?" ଦେବଯାନୀ ପଚାରିଲା ।

"ପ୍ରାଚୀନ, ଅତି ପ୍ରାଚୀନ ଗ୍ରନ୍ଥସବୁ । ତୁମେ ଜାଣ, କାହାଣୀମାନଙ୍କରେ ନିଶ୍ଚୟ କିଛିନାକିଛି ଅତିରଂଜିତ ଅଛି । କିମ୍ବଦନ୍ତୀ କହେ, ଥରେ ଗଙ୍ଗାନଦୀ ଜହ୍ନୁମୁନିଙ୍କ ଆଶ୍ରମ ଭିତରକୁ ପଶିଆସିଲା । ଆଶ୍ରମର ଅନ୍ତେବାସୀମାନେ ଡରି ଗଲେ, ବଢ଼ିଲେ ସେମାନେ ବୁଡ଼ିଯିବେ । କିନ୍ତୁ ଜହ୍ନୁ ଋଷି ପୂରା ନଦୀକୁ ଚଳୁ କରିଦେଲେ ଏବଂ ଜଙ୍ଘବାଟେ ପୁଣି ବାହାର କଲେ । ସେହି ଦିନଠାରୁ ଏ ନଦୀର ନାମ ହେଲା ଜାହ୍ନବୀ । ଆଜିକାଲି ଏ ଜାଗାଟାକୁ କହନ୍ତି ଜଙ୍ଗ୍‌ଲ ।"

"ସେ ତ ଗୋଟାଏ ଗପ । କିନ୍ତୁ ସତ କଥା କ'ଣ କହିଲ ? ଜହ୍ନୁ ଋଷି କ'ଣ ସତକୁସତ ଗଂଗା ନଦୀଟାକୁ ଶୋଷିନେଲେ ?" ଆଦିତ୍ୟ ପଚାରିଲା ।

"ଆରେ ବାବୁ ମୁଁ କ'ଣ ସେଠି ଥିଲି କି ? ଯାହା ଘଟିଥାଉ ନା କାହିଁକି

ପ୍ରକୃତି ଏମିତି ବେଳେବେଳେ ବଡ଼ ଅଦ୍ଭୁତ ଖେଳ ଦେଖାଏ । ଜହ୍ନୁ ମୁନିଙ୍କ ଆଶ୍ରମ ଯେଉଁଠି ଅଛି, ସେଇଠି ପାହାଡ଼ର ନିମ୍ନଭାଗରୁ ହିଁ ଗଂଗା ବହି ଆସିଲା ଭଳି ଦିଶୁଅଛି । ଏମିତି ବି ହୋଇଥିବ ଯେ ସେଠାରେ ପାହାଡ଼ ଫାଟି ଯାଇଥିବ, ତା' ନ ହେଲେ ଗଂଗାର ସୋତ ହଠାତ୍ ଉଚ୍ଛୁଳି ଉଠିଥିବ ଏବଂ ଆଶ୍ରମ ଭିତରକୁ ଗୋଟାଏ ଧାର ପଶିଆସିଥିବ । ଜହ୍ନୁ ଋଷି ପର୍ବତର ଗୋଟିଏ ଅଂଶକୁ କାଟିଦେଇଥିବେ, ଯେମିତିକି ପାଣି ଆଶ୍ରମରୁ ଗଙ୍ଗୋତ୍ରୀ ଆଡ଼କୁ ବହିଯାଇ ଗଙ୍ଗାରେ ମିଶିଯିବ । ଏହିଭଳି ଭାବରେ ସେ ଆଶ୍ରମକୁ ରକ୍ଷାକରିଥିବେ ।"

"କିନ୍ତୁ ଅଜା, ଏଇ ଯେଉଁ କାହାଣୀ—ଗଂଗା ଜହ୍ନୁ ଋଷିଙ୍କ ଜଂଘରୁ ବହିଲା ସ୍ଥାର ଅର୍ଥ କ'ଣ ?" ଆଦିତ୍ୟ ପ୍ରଶ୍ନ ପଚାରିଲା ।

"ମୁଁ ବୁଝେଇ ଦେଉଛି । ଆମେ ଯଦି ଆଶ୍ରମକୁ ଗୋଟିଏ ମଣିଷ ବୋଲି କଳ୍ପନା କରିବା ତେବେ ତା'ର ଉପରଭାଗ ହେବ ମୁଣ୍ଡ, ମଝି ଅଂଶଟି ହେବ ଅଣ୍ଟା, ଆଉ ତଳ ଭାଗଟି ହେବ ଜଂଘ । ଯେହେତୁ ଗଂଗା ଏଇଠି ଗତି ପରିବର୍ତ୍ତନ କରିଛି ସେଇଥିପାଇଁ କୁହାଗଲା ଯେ ଗଂଗା ଜଂଘରୁ ବାହାରିଛି । ତୁମେ ଦେଖିପାରୁଥିବ ଯେ ପର୍ବତର ପାଦଦେଶରେ ମୂଳ ନଦୀ ସାଥିରେ ମିଶିବ ବୋଲି ସ୍ରୋତ କେମିତି ଅତି ବେଗରେ ତଳକୁ ତଳକୁ ପ୍ରବାହିତ ହେଉଛି । ପ୍ରକୃତରେ ଏଇ ଅଂଶଟିକୁ ହିଁ ଜାହ୍ନବୀ କୁହାଯାଏ । କିନ୍ତୁ ଏବେ ଜାହ୍ନବୀ ଗଂଗାନଦୀର ନାମମାନଙ୍କ ମଧ୍ୟରୁ ଗୋଟିଏ ନାମ ।"

"ଏଇ ଶୁଖିଲାକାଠ ଜାହ୍ନବୀରେ ଭାସୁଛି କାହିଁକି ?" ଦେବଯାନୀ ପଚାରିଲା ।

ଅଜା ହସିଆର କରି ଦେଉ ଦେଉ କହିଲେ, "ସାବଧାନ, ଗୋଡ଼ ଖସିବ, ପଡ଼ିବୁ ।"

ଦେବଯାନୀ କାଠଖଣ୍ଡଟାକୁ ଶୁଂଘି କହିଲା, "ବାଃ, ବଢ଼ିଆ ବାସନା ହେଉଛି ତ ।"

"ହଁ, ଏହା ପଦ୍ମାନଦୀର କାଠ । ଏହାର ବାସ୍ନା ଭାରି ମଧୁର ।"

"ଏଇ ଖଣ୍ଡକ ଠିକ୍ ପକ୍ଷୀଭଳି ଦିଶୁଛି । ମୁଁ ଏହାକୁ ଘରକୁ ନେଉଛି । ଜାହ୍ନବୀରୁ ଏହାକୁ ଆଣିଥିଲି ବୋଲି ସବୁବେଳେ ମନେ ପଡ଼ୁଥିବ ।"

ଆଉ ଟିକଏ ବାଟ ଗଲାପରେ ଦେବଯାନୀ ଆଦିତ୍ୟକୁ ହଲେଇ ଦେଇ କହିଲା, "ଦେଖ୍, ଦେଖ୍, ଝୁଲା ପୋଲ ଆଉ ସଂକୀର୍ଣ୍ଣ ଗିରିପଥ ଦେଇ ଘର୍ଘର ନାଦରେ ବହିଆସୁଥିବା ନଦୀକୁ; ଦେଖୁଛୁ ? ମୁଁ ଜମା ସେ ପୋଲ ପାଖକୁ ଯିବିନାହିଁ ।"

"ମୁଁ ନିଶ୍ଚୟ ଯିବି । ତୋର ଭଳିଆ ଲୋକଙ୍କୁ ଚେତେଇବାକୁ ଉଇଲସନ୍ ସାହେବ



ଚନ୍ଦୁଢୋଡ଼ାରେ ବସି ପୋଲ ପାର ହେଉଥିଲେ । ଆଉପଟକୁ ଯିବାକୁ ଅନ୍ୟ ଉପାୟ ବି ନଥିଲା ।”

“ଅଜା, ଏହି ଟିଣଗୁଡ଼ାକ କ’ଣ ଗଛରୁ ଏମିତି ଝୁଲୁଛି ?” ଦେବଯାନୀ ପଚାରିଲା ।

“ଏଗୁଡ଼ିକ ପାଇନ ଜାତୀୟ ଗଛ, ଯେଉଁଥିରୁ ଲାଖ ବାହାରେ । ଗଛର ଗଣ୍ଡିରେ ଗାତ କରି ତା ତଳକୁ ଟିଣ ଝୁଲାଇଦିଆଯାଏ, ସେଥିରୁ ଥୋପିଥୋପି ହୋଇ ଲାଖ ନିଗିଡ଼ିପଡ଼େ । ଲାଖ ବିଶେଷ ଉପଯୋଗୀ । ରଙ୍ଗଦେବାକାମରେ ଏହା ଲାଗେ । ଏହି କାମ ମଧ୍ୟ ଉଇଲସନ୍ ସାହେବ ଆରମ୍ଭ କରିଥିଲେ ।”

ଗୁଡ଼ାଏ ଅଜଣା, ଅଦେଖା ଜିନିଷକୁ ଦେଖି ଦେବଯାନୀ ମନଭିତରେ ଖାଲି ପ୍ରଶ୍ନଗୁଡ଼ାକ ଗୁଡ଼େଇଭୁଡ଼େଇ ହେଉଥିଲା । ସେ ପଚାରିଲା, “ଅଜା, ଏଇଟି କ୍ଷେତ-ଗୁଡ଼ାକ କେଡ଼େ ସାନ ସାନ ।”

ଆଦିତ୍ୟ କହିଲା, “ଦେଖ ଦେବଯାନୀ, ପାହାଡ଼ ପାଖରେ ଫସଲ କରିବା ପାଇଁ ଲୋକେ କିଛି ଜାଗା ସଫା କରିଛନ୍ତି । ତଳେ ସମତଳ ଜାଗାର କ୍ଷେତଗୁଡ଼ିକ କେଡ଼େ ସବୁଜ ଓ ସତେଜ ଦିଶୁଛି । ଅଜା, ଏଠି କି କି ଫସଲ କରୁଛନ୍ତି ?”

"ଧାନ, ରାଶି, ରାମଦାନା, ମକା," ଅଜା କହିଲେ ।

ଦେବଯାନୀ ତାଳମାର ନାଚନାଚ କହିଲା, "ଗଙ୍ଗୋତ୍ରୀକୁ ଯାଉଥିବା ରାସ୍ତା କେଡ଼େ ଓସାର, କେତେ ଚକ୍‌କଣ ! ଏ ଜାଗା, ଏଠାକାର ଗଛଲତା ମତେ ବହୁତ ଭଲ ଲାଗୁଛି···ଦେଖିଲୁଣି, କେତେ ପାର !" ଆଦିତ୍ୟ ମୁଣ୍ଡଟେକ ଅନାଇଲା । ଦଳେ ପାର ଉପରେ ଚକ୍‌କର କାଟୁଥିଲେ । "ଏଭଳି ଥଣ୍ଡା ଜାଗାରେ ଏତେ ପାର ଆସିଲେ କୁଆଡୁ !"

"ପାରମାନେ ବହୁ ଦୂର ଉଡ଼ିବାରେ ଭାରି ପାରଙ୍ଗମ । ଯେତେ ଦୂରକୁ ଗଲେ ମଧ୍ୟ ଏମାନେ ଜମା ବାଟ ଭୁଲନ୍ତି ନାହିଁ । ତୁ କ'ଣ ଭୁଲିଯାଉଛୁ ଯେ ଏହି ପାରମାନେ ଦୂର ଦୂରାନ୍ତକୁ ଖବର ନେଇ ଯାଆନ୍ତି ଓ ପୁଣି ଆପଣା ଘରକୁ ଲେଉଟି ଆସନ୍ତି ?"

"ଏଇଟା କି ଗଛ ଅଜା ?" ଦେବଯାନୀ ପଚାରିଲା ।

"ଏଗୁଡ଼ିକ ଦେବଦାରୁ । ସମୁଦ୍ର ପତ୍ତନଠାରୁ ଅନେକ ଉଚ୍ଚରେ ପର୍ବତ ଉପରେ ଏ ଗଛଗୁଡ଼ିକ ବଢ଼ନ୍ତି ।"

"ଅଜା, ମୋର ମନେହୁଏ ଗଛଗୁଡ଼ାକ ଯେମିତି ମୋ ସାଥିରେ କଥାରେ କଥା ହେବାକୁ ଚାହୁଁଛନ୍ତି । ମତେ ଲାଗୁଛି ଯେମିତି ମୋ ଆପଣାର ।"

"ମତେ ବି ଲାଗୁଛି, ମୁଁ ଏଇଠି ପ୍ରକୃତିର ଖୁବ୍ ନିକଟରେ । କାହିଁକି ଜାଣୁ, ମତେ ଲାଗୁଛି ମୁଁ କବିଟିଏ ହୋଇଗଲିଣି । ଏଠିକାର ଗଛ, ପକ୍ଷୀ, ପଥର ସବୁ ମୋର ସାଙ୍ଗଭଳି ମନେ ହେଉଛନ୍ତି । ପତ୍ରଟିଏ ଛିଣ୍ଡେଇଲେ ଲାଗୁଛି ମୁଁ କିଛି ଧ୍ୱଂସକାଣ୍ଡ କରି ଦେଲି କି ?"

"ଅଜା, ତମେ କ'ଣ ସତ ସତ କବି ପାଲଟିଗଲଣି," ଆଦିତ୍ୟ କହିଲା । ଏଭଳି କଥା ହୋଇହୋଇ ଅଜା, ଆଦିତ୍ୟ ଓ ଦେବଯାନୀ ଗଙ୍ଗୋତ୍ରୀ ରାସ୍ତାରେ ଚାଲିଥାଆନ୍ତି ।

ଅଜା କହିଲେ, "ଆମ ଆଗରେ ଥିବା ଦେବଦାରୁ ଗଛର ଶାଖାଟିକୁ ଦେଖିଲ । ଏବର୍ଷ ଏଇଟା ନିଶ୍ଚୟ ଭାଙ୍ଗି ପଡ଼ିବ ।"

ଆଦିତ୍ୟ କହିଲା, "ହଁ, ତୁଷାରପଡ଼ିଲେ ଶାଖାଟି ତୁଷାରର ଭାର ସମ୍ଭାଳିପାରିବନାହିଁ ।"

ଦେବଯାନୀ ପଚାରିଲା, "ଏଠି ଗଛଗୁଡ଼ାକ ଏଡ଼େ ଲୋଭନୀୟ ଯେ ଗୋଟିଏ ବି ଡାଳ ଭାଙ୍ଗି ଗଲେ ମୋ ମନ ଭାରି ଖରାପ ହେବ । ଏ ଗଛଟା କ'ଣ ଅଜା ?"

"ଏ ଗଛର ନାଁ ଗାଇଡ଼ୁ । ଏଇ ଅଞ୍ଚଳର ଅଶ୍ୱତ୍ଥ ଗଛ । ଯାହାକୁ ମଧ୍ୟ ଲୋକେ ପୂଜା କରନ୍ତି । ଏହାର ପତ୍ର ଅଶ୍ୱତ୍ଥ ପତ୍ର ଭଳି । ପଥୁରିଆ ମାଟି ଯୋଗୁ ଏହାର ଗଣ୍ଡି ଅଶ୍ୱତ୍ଥ

ଗଣ୍ଡି ଭଳି ଓସାରିଆ ନୁହେଁ । ଚାଲ, ଜଲଦି ଜଲଦି ପାଦ ପକାଅ । ଖୁବ୍ ଶୀଘ୍ର ସୂର୍ଯ୍ୟ ଅସ୍ତ ହୋଇଯିବେ ଏବଂ ଶୀତ ପଡ଼ିବ । ଏଇ କାଠପୋଲଟା ଭାଗୀରଥୀ ଉପରେ ପଡ଼ିଛି । ଆମ ଜଙ୍ଗଲ ବଙ୍ଗଳାକୁ ଯିବାକୁ ପୋଲକୁ ପାରି ହେବାକୁ ପଡ଼ିବ ।"

ପୋଲ ପାରି ହେଲାବେଳେ ଆଦିତ୍ୟ ଓ ଦେବଯାନୀ କହିଲେ, "କେଡ଼େ ଜୋର୍‌ରେ ଭାଗୀରଥୀ ବହୁଛି ଦେଖ । ଏହାର ଫେଣ ଏତେ ଦୂରକୁ ମାଡ଼ି ଆସୁଛି ।"

* * *

ରାତି ନଇଁ ଆସିଥିଲା । ପିଲା ଦୁଇଟିଙ୍କ ଆଖିକୁ ନିଦ ମାଡ଼ି ଆସୁଥିଲା । କିନ୍ତୁ ସେମାନେ ଚାହୁଁଥିଲେ କାଲିର ସୂର୍ଯ୍ୟୋଦୟ ସମୟରେ ଗଙ୍ଗୋତ୍ରୀକୁ ଦେଖିବାକୁ । ସିନ୍ଦୂରୀ ଫାଟୁନ ଫାଟୁଣୁ ଚୌକିଦାର ନିଆଁ ଜଳେଇଲା । ବାହାରେ ଭାରି ଶୀତ । ଏଭଳିକି ଝିଡ଼କି-ମାନଙ୍କରେ ମଧ୍ୟ ତୁଷାର ବୋଳି ହୋଇଯାଇଥାଏ । ସେମାନେ ଅଧୀର ଅପେକ୍ଷାରେ ସୂର୍ଯ୍ୟ ଉଦୟ ପାଇଁ ଚାହିଁ ରହିଥାନ୍ତି । ଯେତେବେଳେ ସୂର୍ଯ୍ୟ ଉଇଁଲେ, ସେମାନେ ବହୁ ପ୍ରତୀକ୍ଷିତ ବନ୍ଧୁ ଭଳି ସୂର୍ଯ୍ୟଙ୍କୁ ସ୍ୱାଗତ ଜଣେଇଲେ ଓ ତତ୍‌କ୍ଷଣାତ୍ ଘରୁ ବାହାରିପଡ଼ିଲେ । ଏକ ଉଜ୍ଜ୍ୱଳ ଦୃଶ୍ୟ ତାଙ୍କୁ ଅଭ୍ୟର୍ଥନା ଜଣାଇଲା—ନିର୍ମଳ ଆକାଶ, ନଭଶ୍ଚୁମ୍ବୀ ଦେବଦାରୁ ବୃକ୍ଷ, କଳକଳନାଦିନୀ ଭାଗୀରଥୀର ତେଜୋଦୀପ୍ତ ଜଳରାଶି, ଗୈରିକବସନ ପରିହିତ ସାଧୁସନ୍ଥ । ଦେବଯାନୀର ହାତଧରି ଆଦିତ୍ୟ କହିଲା, "ଏଇ ବାଟେ ଚାଲ ଯିବା । ସେ ସୁନ୍ଦର ଘରଟାକୁ ଦେଖିଲୁ । କେବଳ ପଥରରେ ତିଆରି ହୋଇଛି ।"

ଦେବଯାନୀ କହିଲା, "ସେଇଟା ଘର ନୁହେଁ, ଗୋଟିଏ ଗୁମ୍ଫା । ସେମାନେ ତା ଭିତରକୁ ପଶିଲେ । ଭାବିଥିଲେ ସେ ଗୁମ୍ଫାଟି ଶୂନ୍ୟ, ମାତ୍ର ଦେଖିଲେ ଜଣେ ସାଧୁ ସାମ୍ନାରେ ନିଆଁ ଉହ୍ନେଇଟିଏ ରଖି ବସିଛନ୍ତି । ଦେବଯାନୀ ଥମକି ଠିଆ ହୋଇଗଲା, ମାତ୍ର ଆଦିତ୍ୟ ଆଗେଇ ଯାଇ ସାଧୁଙ୍କୁ ଅଭିବାଦନ ଜଣାଇଲା ଏବଂ ତାଙ୍କ ପାଖରେ ବସିଲା । ସାଧୁ ତାକୁ ଆଶୀର୍ବାଦ କଲେ ଓ କିଛି ଶୁଖିଲା ଫଳ ଖାଇବାକୁ ଯାଚିଲେ । ଆଦିତ୍ୟର ଲାଜକୁଳା ଭାବ ଉଭେଇଗଲା; ସେ ପଚାରିଲା, "ବାବା, ତୁମେ ତ କିଛି ଲୁଗାପଟା ପିନ୍ଧିନାହଁ, ତୁମକୁ ଶୀତ ଲାଗୁନାହିଁ ? ଏଠି ରହିବାକୁ ତୁମକୁ ଡର ଲାଗୁନାହିଁ ?"

ସାଧୁ କହିଲେ, "ମୁଁ ସବୁବେଳେ ଏମିତି ରହିଥାଏ । ତୁଷାରପାତ ସମୟରେ ମଧ୍ୟ । ମୋର ନିଜର ଶ୍ରେଷ୍ଠ ଉହ୍ନେଇଟି ଅଛି । ଡର କ'ଣ ? ଈଶ୍ୱର ସବୁଠାରେ ଅଛନ୍ତି ।"

ଆଦିତ୍ୟ କିଛି ବୁଝିପାରିଲାନାହିଁ । ସାଧୁ କହିଲେ, "ଈଶ୍ୱର ମୋ ହାତରେ ଅଛନ୍ତି ।"

ଆବାକାବା ହୋଇ ଆଦିତ୍ୟ ଓ ଦେବଯାନୀ ମୁହଁ ଚୁହାଁଚୁହିଁ ହେଲେ । ଆଦିତ୍ୟ ପଚାରିଲା, "ଈଶ୍ୱର ତୁମ ହାତରେ ରହୁଛନ୍ତି ?" ଏତିକିବେଳେ ଅଜାଙ୍କ ଡାକ ଶୁଭିଲା । ସାଧୁଙ୍କୁ ବିଦାୟ ଜଣେଇ ସେମାନେ ଫଳ ଗ୍ଲେବେଇ ଗ୍ଲେବେଇ ବାହାରକୁ ଧାଇଁଗଲେ ।

ଅଜା ପଚାରିଲେ, "କିରେ, କେଉଁ ଗୁମ୍ଫାରେ ଲୁଚିଯାଇଥିଲ ? ଏଠି ସବୁ ଗୁମ୍ଫାରେ ଜଣେ ଜଣେ ସାଧୁଙ୍କୁ ଦେଖିବ, ଏ ସାଧୁଙ୍କ ଜାଗା ।" ତା'ପରେ ଅଜା ସେମାନଙ୍କୁ ଗଂଗୋତ୍ରୀ ଦେଖାଇବାକୁ ନେଇଗଲେ ।

"ଗଂଗାତଟରେ ଥିବା ଏଇ ଧଳା ପଥରଟିକୁ ଦେଖୁଚ ? ଏହାକୁ କହନ୍ତି, ଭଗୀରଥଙ୍କ ପଥର । କାରଣ ଭଗୀରଥ ଏଇ ପଥର ଉପରେ ବସି ଧ୍ୟାନ କରିଥିଲେ ।"

"ଧ୍ୟାନ କ'ଣ ?" ଆଦିତ୍ୟ ପଚାରିଲା ।

"ଧ୍ୟାନ ହେଉଛି ଏକାଗ୍ର ଲକ୍ଷ୍ୟ । ଜଣେ ଲୋକ ସମ୍ପୂର୍ଣ୍ଣ ଧ୍ୟାନସ୍ଥ ହୋଇଗଲେ ସେ ତା' ଚାରିପଟର ପୃଥିବୀକୁ ଭୁଲିଯାଏ । ଯେତେ ବୈଜ୍ଞାନିକ ଉଦ୍ଭାବନ ହେଉଛି, ସେଗୁଡ଼ିକ





ମଧ୍ୟ ଏଭଳି ଦୃଢ଼ ତପସ୍ୟାର ଫଳ । ଭଗୀରଥଙ୍କ ଧ୍ୟାନ ମଧ୍ୟ ଏକମୁଖୀ ଏକାଗ୍ରତା ସଙ୍ଗେ ସମାନ । ଯେତେବେଳେ ଜଣେ ଲୋକ କାୟମନୋବାକ୍ୟରେ ତା' କାମରେ ମଜ୍ଜି-ଯାଏ, ଲୋକେ ତାକୁ କହନ୍ତି ଯେ ଭଗୀରଥ ସାଧନା କରୁଛି ।"

ଦେବଯାନୀ ଗଂଗାରେ ତା ହାତ ବୁଡ଼ାଇଲା । "ଆଃ, ପାଣି କି କାଲୁଆ ! ଅଜା, ଏଠି ନଦୀ କେଡ଼େ ଚଉଡ଼ା ଦେଖୁଛ ?"

"ଏଭଳି ଏକ ସମୟ ଥିଲା ଯେତେବେଳେ ଜୟପୁର, ଗୋଆଲିଅର, ଇନ୍ଦୋର ଓ ଟେହେରି ରାଜ୍ୟର ରଜାମାନେ ଗଂଗା କୂଳେକୂଳେ ସୁନ୍ଦର ଘାଟସବୁ ନିର୍ମାଣ କରିଥିଲେ । ବର୍ଷେ ଦେବନଦୀରେ ବନ୍ୟା ଆସି ସବୁ ଘାଟକୁ ଧୋଇ ନେଇଥିଲା । ମନ୍ଦିରର ମଧ୍ୟ ଅନେକ କ୍ଷତି ହୋଇଥିଲା ଏବଂ ତାକୁ ମରାମତି କରିବାକୁ ପଡ଼ିଥିଲା ।"

"ଏଇଠି ମଧ୍ୟ ବନ୍ୟା ହୁଏ କି ଅଜା ?" ଆଦିତ୍ୟ ପଚାରିଲା ।

"କେବେ କେବେ ପ୍ରଚୁର ବର୍ଷା, ପୁଣି କେବେ କେବେ ତୁଷାର ପାହାଡ଼ରୁ ତରଳା ପାଣି ଆସି ବନ୍ୟା ସୃଷ୍ଟି କରେ ।"

"ତୁଷାର ନଦୀ କ'ଣ ଅଜା ?" ଆଦିତ୍ୟ ପଚାରିଲା । 38

"ଏହା ବରଫର ନଦୀ ।"

"ଅଜା, ଗଂଗାର ଉତ୍ପତ୍ତି କେଉଁଠି ? ତମେ କହିଥିଲ ଭଗୀରଥ ଏଇଠୁ ଗଂଗାକୁ ବୁହାଇଥିଲେ ।" ଦେବଯାନୀ କହିଲା ।

"ରାଜା ଭଗୀରଥ ଏଇଠୁ ଗଂଗା ବୁହାଇଥିଲେ ବୋଲି କିମ୍ବଦନ୍ତୀ ଥିଲେ ମଧ୍ୟ ଏବେ ଲୋକେ କହୁଛନ୍ତି ଯେ ନଦୀର ଗତିପଥରେ ଏଇଠି ପରିବର୍ତ୍ତନ ଘଟିଛି । ଏହି ଉତ୍ସ ଗୋମୁଖ ଆଡ଼କୁ ବାରମାଇଲ ଘୁଞ୍ଚିଯାଇଛି । କିନ୍ତୁ ତୁମେ ଗୋମୁଖ ଗଲେ ଦେଖିବ ଯେ ଗଂଗାର ଉତ୍ସ ସେଠି ମଧ୍ୟ ନାହିଁ ଆଉ କୋଉଠୁ ଆସିଲା ଭଳି ମନେହେବ ।"

"ଅଜା, ଆମକୁ ଭଗୀରଥଙ୍କ ତପସ୍ୟା କଥା କୁହ ।"

"ମୁଁ ତୁମକୁ ରାତିରେ ଏ ଗପ କହିବି । ଏଇ ଶୁଣ, ଦେଉଳରେ ଶଂଖ ଘଣ୍ଟି ବାଜିଲାଣି, ଆଳତି ହେଉଛି ବୋଧହୁଏ । ଚାଲ ଯିବା ଗଂଗା ମନ୍ଦିରକୁ । ସେଠାରେ ବହୁ ସାଧୁସନ୍ଥ ଥିବେ । ସେମାନେ ସବୁବେଳେ ସଂଧ୍ୟା ଆରାଧନା ପାଇଁ ଆସନ୍ତି ।" ୩୮



ଅଜା କହିଲେ, "ଏହି ମନ୍ଦିରଟି ଗୁର୍ଖାବଂଶ ଶତାବ୍ଦୀରେ ଜେନେରାଲ ଅମର ସିଂହ ଥାପାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଆଗେ ଏଠାରେ କାଠର ମନ୍ଦିରଟିଏ ଥିଲା । ସେ ସମୟର ଗୋଟିଏ ତାମ୍ରଲେଖ ମନ୍ଦିରରେ ରହିଅଛି ।"

"ତାମ୍ରଲେଖ କ'ଣ ?"

"ତୁ କହୁନୁ କ'ଣ ? ତାମ୍ରମାନେ କ'ଣ ତୁ ତ ଜାଣିଛୁ ।"

"ହଁ ଜାଣେ ।"

"ଲେଖ କ'ଣ ?"

"ଯାହା ଲେଖାଯାଇଅଛି ।" ଦେବଯାନୀ ଉତ୍ତର ଦେଲା ।

"ଏବେ ମୁଁ ବୁଝିଲି । ତାମ୍ରଲେଖ ବୋଇଲେ ଗୋଟିଏ ତମ୍ବାପଟାରେ କ'ଣ ଲେଖା ହୋଇଥିବ । ଅଜା, ଏ ତାମ୍ରଲେଖରୁ କ'ଣ ଜଣାଯାଉଛି ?" ଆଦିତ୍ୟ ପଚାରିଲା ।

"ମୁଁ ପଢ଼ି ନାହିଁ । ଶୁଣିଛି 'ଆମକୁ ଶ୍ରଦ୍ଧାଞ୍ଜଳିଦିଅ, ମୂର୍ତ୍ତିଟି ମନ୍ଦିରରେ ରଖି ପୂଜାକର ।"

"ଆମକୁ ଶ୍ରଦ୍ଧାଞ୍ଜଳି ଦିଅ ? ଏଇଠି ତ କେବଳ ଗଂଗାଙ୍କୁ ଶ୍ରଦ୍ଧାଞ୍ଜଳି ଦେବାକଥା ।"

"ଏକଦମ୍ ଠିକ୍ । କିନ୍ତୁ ଘଟଣାଟା ହେଲା ଯେ କିଛି କାଳ ପାଇଁ ଗଙ୍ଗୋତ୍ରୀ ଗୁର୍ଖାମାନଙ୍କର ଶାସନାଧୀନ ଥିଲା । ସେଥିପାଇଁ ବିଜୟୀ ଗୁର୍ଖାରାଜା ତମ୍ବାପଟାରେ ଲେଖି ଦେଇଥିଲେ ଯେ 'ଆମକୁ ଶ୍ରଦ୍ଧାଞ୍ଜଳି ଦିଅ ।' ସେହି ରାଜା ମନ୍ଦିର ମରାମତି କରିଥିଲେ ଓ ଲୋକଙ୍କୁ କହିଥିଲେ ଯେ ସେମାନେ ଏଠି ପୂଜା କରିପାରିବେ । କିନ୍ତୁ ସେମାନେ ଗୁର୍ଖା ବଂଶର ପ୍ରଭୁତ୍ୱକୁ ସ୍ୱୀକାର କରିବେ । ଏବର ମନ୍ଦିର ଗୋଆଲିଅରର ରାଜାଙ୍କ ଦ୍ୱାରା ପୁନଃ ନିର୍ମିତ ହୋଇଥିଲା । ଜୟପୁର ରାଜା ଏହାର ପ୍ରାଙ୍ଗଣ ସମ୍ପ୍ରସାରଣ କରିଥିଲେ ।"

ଦେବଯାନୀ ପଚାରିଲା, "ଭକ୍ତମାନେ କି ଭଜନ କରୁଛନ୍ତି ?"

"ସେମାନେ ଗଂଗାଙ୍କୁ ଭଜନ କରୁଛନ୍ତି । ତାଙ୍କୁ ସ୍ତୁତି କରି କେତେ ସୁନ୍ଦର ଗୀତ ଗାଉଛନ୍ତି ଶୁଣ," ଅଜା କହିଲେ ।

ଗଂଗା ମନ୍ଦିରଟି ଗୋଟିଏ ଅତି ସୁନ୍ଦର ଦୃଢ଼ ଭବନ । ଅତି ବିରାଟ ନୁହେଁ କି ଅତି କ୍ଷୁଦ୍ର ନୁହେଁ । ଦେବଯାନୀକୁ ଶ୍ୱେତ ମନ୍ଦିର ଓ ତା'ର ଶୁଭ୍ର ପ୍ରାଙ୍ଗଣ ବହୁତ ଭଲ ଲାଗିଲା । ଆଜିତ ଅନେକ ସମୟ ଧରି ବୁଲିଲା । ନଭସ୍ପର୍ଶୀ ତୁଷାରଧବଳ ଗିରିଶୃଙ୍ଗ, କଳକଳ ନିନାଦିନୀ ଜ୍ୟୋତିର୍ମୟୀ ଗଂଗା, ଗୈରିକ ବସନ ପରିହିତ ସାଧୁମଣ୍ଡଳୀ ଏବଂ ପ୍ରଶାନ୍ତ

ପରିବେଶ ଯାହାର ନୀରବତା କେବଳ ମନ୍ଦିରର ଘଣ୍ଟାଧ୍ୱନି ଓ ମନ୍ତ୍ରୋଚ୍ଚାରଣରେ ହିଁ ଭଂଗ ହେଉଥିଲା । ଏହି ଦୃଶ୍ୟ ଶିଶୁ ଦୁହିଁଙ୍କ ମନରେ ଗଭୀର ରେଖାପାତ କଲା ।

ସୂର୍ଯ୍ୟାସ୍ତ ହେବା ସଂଗେ ସଂଗେ ଥଣ୍ଡା ପଡ଼ିବାକୁ ଲଗିଲା । ଅଜା ପିଲାଙ୍କୁ ଜଂଗଲ ବଙ୍ଗଳାକୁ ନେଇଗଲେ । ପାଖ ଦୋକାନରୁ ଚୌକିଦାର ରନ୍ଧାସାମଗ୍ରୀ ସବୁ ନେଇଥାଏ । ଅଜା ଷ୍ଟୋଭ ଜାଳି ରୋଷାଇ କଲେ । ତିନିହେଁ ସାଙ୍ଗହୋଇ ଖାଇଲେ ।

"ଅଜା, ଏ ଦୋକାନଗୁଡ଼ିକରେ କ'ଣ ସବୁ ଜିନିଷ ମିଳେ ?" ଦେବଯାନୀ ପଚାରିଲା ।

"ଯାତ୍ରୀମାନଙ୍କ ପାଇଁ ଯାହା ଲୋଡ଼ା, ସେତିକି ମିଳେ । ସେପ୍ଟେମ୍ବର ମାସ ଚାଲିଛି । ଆଉ ଅଳ୍ପ କେଇଟା ଦିନ ଦୋକାନ ଖୋଲା ରହିବ । ତା'ପରେ ତୁଷାର ପଡ଼ିବ । ପ୍ରଥମ ତୁଷାରପାତ ହେବା ସଂଗେ ସଂଗେ ପାହାଡ଼ିଆ ଜାଗା ଛାଡ଼ି ଲୋକେ ସମତଳ ଅଞ୍ଚଳକୁ ଚାଲିଯିବେ ।"

"କ'ଣ ସମସ୍ତେ ପଳାନ୍ତି ? ଜଣେ ବି କେହି ରହନ୍ତି ନାହିଁ ?"

"କେତେକ ସାଧୁ କେବେହେଲେ ପର୍ବତ ଛାଡ଼ି ଯାଆନ୍ତି ନାହିଁ । ଏପରିକି ବରଫରେ ଏ ଜାଗା ଆବୃତ ହୋଇଗଲେ ବି ସେମାନେ ଗୁମ୍ଫା ଭିତରେ ରହିଥାନ୍ତି । ସେମାନେ ଲୁଗାପଟା ପିନ୍ଧନ୍ତି ନାହିଁ । ହେଲେ ଏଭଳି ସାଧୁମାନଙ୍କ ସଂଖ୍ୟା ବହୁତ କମ ।"

ଦେବଯାନୀ କହିଲା, "ସେମାନେ କେମିତି ସମ୍ଭାଳନ୍ତି ଅଜା ? ମୁଁ ତ ଏତିକିବେଳୁ ଶୀତରେ ଥରିଲିଣି !"

"ଏହି ସନ୍ଥମାନେ ନିଶ୍ଚୟ ଯୋଗବିଦ୍ୟା ଜାଣିଥିବେ । ସେମାନଙ୍କ ଶିଷ୍ୟମାନେ ଶୀତକାଳ ପାଇଁ ବହୁତ କାଠ ସଂଗ୍ରହ କରି ଆଣି ଦେଇଥାନ୍ତି । ଏମାନେ ନିଆଁ ଜାଳି ରୁହନ୍ତି । ସମତଳ ଜାଗାକୁ ଗଲେ ସେମାନଙ୍କ ଧ୍ୟାନରେ ବ୍ୟାଘାତ ହେବ ।"

ଦେବଯାନୀ ତା ମୁଣ୍ଡ ଉପରକୁ କମଳଟି ଟାଣିନେଇ କହିଲା, "ଏକଥା ଶୁଣିଲା-ବେଳକୁ ମତେ ଶୀତ ହେଲାଣି ।"

ପିଲାଏ ଭାରି କ୍ଳାନ୍ତ ହୋଇ ଯାଇଥାଆନ୍ତି । ଶେଯରେ ପଡ଼ୁ ପଡ଼ୁ ନିଦ ଆସିଗଲା । ସକାଳେ ଅଜା ଉଠିଲାବେଳକୁ ପିଲାଙ୍କ ପତ୍ତା ପାଇଲେ ନାହିଁ । ଅଜା ଭାବିଲେ ବୋଧେ ସେମାନେ ପୁଣି ଗୁମ୍ଫା ଆଡ଼କୁ ଯାଇଥିବେ । ହେଲେ ନିକଟରୁ ପିଲାଙ୍କ ପାଟି ଶୁଭିଲା ।

ଅଜା ପଚାରିଲେ, "କ'ଣ ହେଲା ? ତୁମେ ଏ ପଥରସବୁ ଗୋଟେଇଛ କାହିଁକି ?"

"ଅଜା, ଦେଖିଲଣି କେଡ଼େ ସୁନ୍ଦର ପଥର ସବୁ । ଆମ ଘରେ ଏମିତି ପଥର ନାହିଁ । ଏମିତିକି ଆମେ ଏମାନଙ୍କର ନାଁ ମଧ୍ୟ ଦେଇସାରିଛୁ । ଏଇଟିର ନାଁ 'ଅଜା'," ଦେବଯାନୀ କଥା ବଢ଼େଇଲା ।

"ହଲେ କାହିଁକି ? ତୋ ଅଜା ଆଉ ଏ ପଥର ଭିତରେ କ'ଣ ଏମିତି ସାମଞ୍ଜସ୍ୟ ଦେଖିଲୁ ଯେ ?" ଅଜା ହସି ହସି ପଚାରିଲେ ।

"ତୁମେ ପଇତା ପକେଇଛ—ଏ ପଥର ବି ସେମିତି ପକେଇଛି । ଦେଖିଲଣି ?"

"ତୁ ଧଳା ପଥର ଉପରେ ପଡ଼ିଥିବା ମାଟିଆ ଗାରଟି କଥା କହୁଛୁ କି ? ତୁ ଖୁବ ଗାଳୋଝ ହେଲୁଣି ।"

"ଆଉ ଏ ପଥରଟି ହେଲା 'ଆଈ' ।"

"କାହିଁକି ? ତୁ କ'ଣ ବସିଛୁ ପୂରା ପରିବାରଟିଏ ଏଥିରୁ କରିବାକୁ ?"

"ଏହାର କପାଳରେ ଟିପାଟିଏ ଅଛି । ସବା ଉପରେ ଥିବା କଳାବିନ୍ଦୁଟିକୁ ଦେଖିଲ, ଟିପାପରି ଦିଶୁନାହିଁ ?"

ଅଜା ହସିଲେ ।



"ଯାକୁ କହନ୍ତି 'ନୀଳକାନ୍ତ ମଣି'। ଦେଖିଲ ଏହା କେତେ ନୀଳ ଦିଶୁଛି। ମୁଁ ଏ ସବୁ ଘରକୁ ନେଇଯିବି।"

"ତୁ ନିଜେ ଯଦି ସେସବୁ ବୋହିକରି ନେଇପାରିବୁ ନେ। ମୁଁ ଖାଲି କିଛି ଗଂଗାଜଳ ନେବି। ମୋ ସାଂଗରେ ଆସ୍—ମୁଁ ତତେ ପ୍ରକୃତରେ ଗୋଟାଏ ବିଚିତ୍ର ପଥର ଦେଖାଇବି।"

ଗଂଗୋତ୍ରୀର ପଥରଗୁଡ଼ିକର ବିଶେଷତ୍ୱ ହେଲା, ସେଥିରୁ ଅଧିକାଂଶ ସଫେଦ। ଅଜା ତାପରେ ଆଦିତ୍ୟଙ୍କୁ ଏମିତି ଗୋଟାଏ ପଥର ଦେଖାଇଲେ ଯେ ସେଥିରେ ଧନୁ, ବାଣ ଓ ତା ପାଖରେ ପାଦୁକା ଚିହ୍ନ ରହିଛି।

"ଏଗୁଡ଼ିକ ଭରତ ପୂଜା କରୁଥିବା ଶ୍ରୀରାମଙ୍କ ପାଦୁକା ଚିହ୍ନ ବୋଲି କୁହାଯାଏ। ଗଂଗାଜଳ ଏ ଗୁଂଫା ଭିତରକୁ କେମିତି ବହି ଆସୁଛି ଦେଖିଛୁ ଆଦିତ୍ୟ? ଶିବଲିଙ୍ଗ ଆକାରରେ ଏଇଠି ଗୋଟାଏ ଜାଗାରେ ଗଂଗାଜଳ ପଡୁଛି," ଅଜା ଦେଖାଇଦେଲେ।

ଜଂଗଲ ଡାକବଙ୍ଗଳାକୁ ଫେରିବା ପରେ ଗୋମୁଖ ଯାତ୍ରା ପ୍ରସ୍ତୁତିରେ ଅଜା ବ୍ୟସ୍ତ ରହିଲେ। ସେ ଖଚର ମାଲିକମାନଙ୍କ ସାଂଗରେ କଥାବାର୍ତ୍ତା ହେଲେ, ଯେଉଁମାନେ ତାଙ୍କୁ କିଛିବାଟ ନେଇଯାଇପାରିବେ। ଅବଶିଷ୍ଟ ବାଟ ସେମାନେ ପାଦରେ ଚାଲି ଚାଲି ଯିବେ, କେଉଁଠି ବିରାଟ ବିରାଟ ପଥର ଉପରେ ହାମୁଡ଼ି ହାମୁଡ଼ି, ଗଡ଼ି ଗଡ଼ି, ଘୁଷୁରି ଘୁଷୁରି ଯିବାକୁ ପଡ଼ିବ।

ଅଜା ପିଲଙ୍କୁ ଡାକି କହିଲେ, "ପିଲେ, ଯିବାକୁ ସଜିଲ ହେଲଣି? ମନେରଖ, ବେଳାବେଳି ବାହାରିବାକୁ ହେବ। ମୁଁ ତୁମକୁ ଆଗରୁ ବତେଇଛି ପର୍ବତ ଉପରେ ଯାତ୍ରା କଲେ ଭୋର ହେବା ସଙ୍ଗେ ସଙ୍ଗେ ବାହାରିବାକୁ ପଡ଼ିବ।"

ପିଲାମାନେ ପଚାରିଲେ, "ଆମେ କାଲି ଗୋମୁଖରେ ପହଞ୍ଚିଯିବା ତ?"

"ନା, ଆମେ ଚିରବାସରେ ରାତି କଟାଇବା। ତା ପରଦିନ ଆମେ ଗୋମୁଖ ଯିବା; କିନ୍ତୁ ରାତିରେ ପୁଣି ଚିରବାସକୁ ଫେରିଆସିବା। ଆମ ରାସ୍ତାରେ ଭୂର୍ଜବାସ ଓ ପୁଷ୍ପବାସ ପଡ଼ିବ, କିନ୍ତୁ ଆମେ ସେଠାରେ ଅଟକିବା ନାହିଁ। ଦେବଯାନୀ, ତୁ ରନ୍ଧା ଜିନିଷ ଯୋଗାଡ଼ କରିବାରେ ରହିବୁ। ଆମେ ଯେତେ ଚାଲିବା ଆମକୁ ସେତିକି ଅଧିକ ଭୋକ ହେବ।



ମନେରଖ, ପେଟ ଖାଲିକରି ରହିବନାହିଁ । ମୁଁ ପକେଟରେ କିଛି ଶୁଖିଲା ଫଳ ଧରି ଯିବି ଓ ବାଟଯାକ ଚୋବେଇ ଚୋବେଇ ଚାଲିବି ।"

ଦେବଯାନୀ ଚଟାପଟ୍ କହିଲା, "ଆମେ ଆମ ପକେଟରେ ଭର୍ତ୍ତିକରିଛୁ ଶୁଖିଲା ଫଳ, ମିଶ୍ରି ଏବଂ ବ୍ୟାଗ୍‌ରେ ବିସ୍କୁଟ ପ୍ୟାକେଟ ଓ ବାରମଜା ରଖିଛୁ । ଛେନା ଟିଣ ମଧ୍ୟ ରଖିଛୁ, ଖାଲି ଟିଣଗୁଡ଼ିକୁ ଆମେ ଫିଙ୍ଗିଦେଇପାରିବା—ଅସନା ହେବନାହିଁ ।"

ଅଜା ହସି ହସି କହିଲେ, "ଏବେ ସତକଥାଟି ବାହାରିପଡ଼ିଲା । ମୁଁ ଭାବୁଥିଲି ଆମ ଟିଣ ଓ ପ୍ୟାକେଟ ସବୁ ଗଲା କୁଆଡ଼େ ? ଶୁଖିଲା ଫଳଗୁଡ଼ିକ କିଏ ନେଲା ଭାବି ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ଏବେ ଜଣାପଡ଼ିଲା ।"

ଆଦିତ୍ୟ ଓ ଦେବଯାନୀଙ୍କ ମୁହଁ ଲାଜରେ ଶୁଖି ଏତେ ଟିକେ ହୋଇଗଲା । "ଆମେ ତୁମକୁ ପଚାରିବୁ ବୋଲି ଭାବୁଥିଲୁ, ତୁମେ ହାଲିଆ ହେଲାବେଳକୁ ଆମେ ପକେଟରୁ କିଛି କାଢ଼ି ତୁମକୁ ବଢେଇ ଦେଲେ ତୁମେ କେତେ ଖୁସି ନ ହେବ ।"

"ତୁମେମାନେ କେତେ ଚାଲାକ ! ପୋଖତ ପାର୍ବତୀମାନେ ଠିକ୍ ସେଇଆ କରିଥାଆନ୍ତି । ସେମାନେ ହାତପାଆନ୍ତାରେ କିଛି ଖାଇବା ଜିନିଷ ରଖିଥାଆନ୍ତି ।"

ଦେବଯାନୀ ସଙ୍ଗେ ସଙ୍ଗେ ପଚାରିଲା, "ଆଦିତ୍ୟ, ତରିବାସ କ'ଣ ? ଇଏ କି ପ୍ରକାର ନାଁ ?"

ଅଜା ତା କଥା ଶୁଣିପାରିଲେ । କମ୍ବଳଟାକୁ ଗୋଡ଼ରୁ ମୁଣ୍ଡଯାଏଁ ଘୋଡ଼ିହୋଇ ସେ ଆସି ପିଲାଙ୍କ ପାଖରେ ବସିଲେ । କହିଲେ, "ତୁମେମାନେ ଦେଖିବ, ଆମେ ଯେତିକି ଯେତିକି ଉପରକୁ ଉଠିବା, ଭିନ୍ନ ଭିନ୍ନ ଉଦ୍ଭିଦସବୁ ଆମ ନଜରକୁ ଆସିବ । ସମୁଦ୍ର ପତ୍ତନଠାରୁ କିଛି ଉଚ୍ଚକୁ ଗଲେ ତୁମେ ଚିର ପାଇନଜାତୀୟ ଅରଣ୍ୟ ଦେଖିପାରିବ । ଏହାପରେ ଦେଖିବ ଭୂର୍ଜବଣ । ଆଉ ଟିକିଏ ଉଚ୍ଚକୁ ଗଲେ ଦେଖିବ ବୁଦୁବୁଦିକା ଜଂଗଲ ଫୁଲର ଅରଣ୍ୟ । ଆହୁରି ଆଗକୁ ଗଲେ ଦେଖିବ ଘାସ ଆଉ ଘାସ । ତାପରେ ଖାଲି ପଥର ଆଉ ପଥରମାଳ ।"

"ଶେଷ ପାଇନଗଛଟି ଯେଉଁଠି ଦେଖିବ , ସେପର୍ଯ୍ୟନ୍ତ ବସ୍ତୁତଅଞ୍ଚଳଟିକୁ ତରିବାସ; ଯେଉଁପର୍ଯ୍ୟନ୍ତ ଭୂର୍ଜବଣ ଚାଲିଛି ସେପର୍ଯ୍ୟନ୍ତ ଭୂର୍ଜବାସ; ବୃକ୍ଷହୀନ ଅଞ୍ଚଳ—ଯେଉଁଠି କେବଳ ବୁଦୁବୁଦିକା ଜଂଗଲ ଓ ନାନା ଋତୁରେ ନାନା ଫୁଲ ହୁଏ, ତାକୁ ପୁଷ୍ପବାସ;

ଗୋମୁଖ ପାରିହୋଇଗଲେ ଯେଉଁ ଅଞ୍ଚଳ ପଡ଼ିବ ସେ ପଥୁରିଆ ଅଞ୍ଚଳକୁ କହନ୍ତି ତପୋବନ । ଆସନ୍ତାକାଲି ସକାଳେ ତୁମେମାନେ ନିଜ ଆଖିରେ ସେ ଅଞ୍ଚଳ ଦେଖିବ ।”

ଗୋମୁଖ ସ୍ୱପ୍ନ ଦେଖୁ ଦେଖୁ ପିଲେ ଶୋଇଗଲେ । ସିନ୍ଦୂର ଫାଟିଲା ବେଳକୁ ସେମାନଙ୍କ ନିଦ ଭାଙ୍ଗିଗଲା । ଖଚର ମାଲିକମାନେ ପହଞ୍ଚିବା ଆଗରୁ ଦେବଯାମି ରନ୍ଧା ସାମଗ୍ରୀ ଯୋଗାଡ଼ କରି ରଖିଥିଲା ଏବଂ ଆଦିତ୍ୟ ଜିନିଷପତ୍ର ବନ୍ଧାବନ୍ଧ କରି ସାରିଥିଲା ।



ଅଜା ଆଗେ ଆଗେ ବାଟ କଢ଼େଇଲେ । ପିଲେ ତାଙ୍କ ପଛେ ପଛେ ଚାଲିଥାଆନ୍ତି । ଖଚରମାଲିକମାନେ ଖଚରର ଧରି ତାଙ୍କୁ ଅନୁସରଣ କରୁଥାଆନ୍ତି । ଯଦିଓ ଖଚରମାନେ ଖୁବ୍ କମ ବାଟ ଯାଇପାରନ୍ତି, ପିଲାଙ୍କୁ କଷ୍ଟ ଜଣା ହେବବୋଲି ଅଜା ସେମାନଙ୍କୁ ଭଡ଼ାରେ ନେଇଥିଲେ । ରାସ୍ତା ଖାସି ଅଣଓସାରିଆ, କେବଳ ଚାଲିବା ପାଇଁ ହିଁ ଜାଗା ଅଛି । ତଳକୁ ଚାହିଁଲେ ଭାଗୀରଥୀର ଚକ୍‌ଚକ୍ ପାଣି ଦୃଷ୍ଟି ଆକର୍ଷଣ କରେ ।

ଦେବଯାନୀ ହଠାତ୍ ଅଟକି ଯାଇ କହିଲା, "ଅଜା, ମୁଁ ପୂରା ଭୁଲିଯାଇଥିଲି । ଆଜି ମୋର ଜନ୍ମଦିନ ।"

ଅଜା ତାଙ୍କ ବାଡ଼ି ଠୁକ ଠୁକ କହିଲେ, "ଅଟକିଯାଅନା, ଚାଲୁଥାଅ । ଘରକୁ ଗଲେ ଜନ୍ମଦିନ ପାଳିବୁ । ଏଠି କେବଳ ଗଙ୍ଗାମାତାଙ୍କ ଜନ୍ମଦିନ ପାଳନ ହୁଏ ।"

ପିଲା ଦୁହେଁ ଏକା ସାଙ୍ଗରେ କହି ଉଠିଲେ, "ଗଙ୍ଗାଙ୍କ ଜନ୍ମଦିନ ଆମେ ପାଳିବୁ, କେବେ ପଡୁଛି ?"

ଅଜା ଉତ୍ତର ଦେଲେ, "ଭାରତୀୟ ପାଞ୍ଜି ଗଣନା ଅନୁସାରେ ଠିକ୍ କରାଯାଏ । ଏ ପାଞ୍ଜି ପାଶ୍ଚାତ୍ୟ କ୍ୟାଲେଣ୍ଡରଠାରୁ ଭିନ୍ନ । ଭାରତୀୟ ତିଥି ଓ ପାଶ୍ଚାତ୍ୟ ତାରିଖର ମେଳ ସବୁବେଳେ ରହେନାହିଁ ।"

ଦେବଯାନୀ ପଚାରିଲା, "ଗଙ୍ଗାଙ୍କ ଜନ୍ମଦିନ ପାଳନରେ ପାର୍ଟି ହୁଏ କି ?"

ଆଦିତ୍ୟ କହିଲା, "ଦେଖିଲି ଅଜା, ଗଙ୍ଗାଙ୍କ ଜନ୍ମଦିନ କେବେ ସେକଥା ପଚାରିବାକୁ ମତେ ଦେଉନାହିଁ । ତାର ଖାଲି ପାର୍ଟି କଥା ଚିନ୍ତା ।"

ଅଜା କହିଲେ, "ଗଙ୍ଗାଙ୍କ ଜନ୍ମଦିନକୁ ଗଙ୍ଗା ଦଶହରା କୁହାଯାଏ । ଏହା ଜୁନ ମାସର ଅଧାଅଧି ବେଳକୁ ପଡ଼େ । ସେ ଦିନ ଗଙ୍ଗା ସ୍ନାନ କଲେ ପୁଣ୍ୟ ଫଳ ମିଳେ ବୋଲି ଲୋକଙ୍କର ଭାରି ବିଶ୍ୱାସ । ବୁଝିଲୁ ଦେବଯାନୀ, ସେଦିନ ଗରିବଙ୍କୁ ଦାନ କରିବା, ଦରିଦ୍ର ନାରାୟଣ ଭୋଜନ ଦେବା, ଦାନ ଧର୍ମ ଆଦି କରିବା କଥା—ନେବା କଥା ନୁହେଁ ।"

"ଦାନଧର୍ମ କ'ଣ ଅଜା ?" ଆଦିତ୍ୟ ପଚାରିଲା ।

ଅଜା ଉତ୍ତର ଦେଲେ, "ଭଗବାନଙ୍କ ନାମରେ ଗରିବ ଲୋକଙ୍କୁ ସାହାଯ୍ୟ କରିବା ଏବଂ ସେକଥା ପାଶୋରି ଯିବା । ପ୍ରକୃତ ଦାନ କେବେହେଲେ ମନେ ପକାଇବା କଥା ନୁହେଁ ।"

ଦେବଯାନୀ କହିଲା, "ଏ କି ପ୍ରକାର ଜନ୍ମଦିନ ? ପାର୍ଟିନାହିଁ, ଉପହାରନାହିଁ ।"

ଅଜା କହିଲେ, "ଠିକ୍ ଅଛି, ମୁଁ ତୁମକୁ କିଛି ଦେବି । ଗଙ୍ଗା ପାଖରେ, ଏତେ ସୁନ୍ଦର ପରିବେଶରେ ଏତେ ଶୀଘ୍ର ତୁମେ ଆଉ ଗୋଟାଏ ଜନ୍ମଦିନ ପାଳିବାର ସୁଯୋଗ ପାଇ ନ ପାର ।" ପୁଣି ସେ କହିଲେ, "ଏଇଠି ଟିକେ ଚାହିଁଯାଅ । ଗଂଗା ମାଆଙ୍କ ଆଡ଼କୁ ମୁହଁ କର । ହାତଯୋଡ଼ି କୁହ, 'ମାଆ ଗଙ୍ଗା, ମୁଁ ତୁମକୁ କିଛି ମାଗିବି' ।"

ଦେବଯାନୀ କହିଲା, "ମୁଁ ବଡ଼ପାଟିକରି କହିବି । ଗଙ୍ଗା ମାଆ ଶୁଣିବେ, ମାଆ ଗଙ୍ଗା, ମୁଁ ତୁମକୁ କିଛି ମାଗିବି ।"

"ହେ ଭଗବାନ ! ଏତେ ପାଟିରେ କହନାହିଁ । ପାଟିକରି ଯାହା କୁହାଯାଏ ତାହା ଅନ୍ୟମାନଙ୍କ ପାଇଁ । ଅନ୍ତର ଭିତରେ ଯାହା କୁହାଯାଏ, ତାହା ଈଶ୍ୱରଙ୍କ ପାଇଁ । ତେଣୁ ମନେ ମନେ କହ, 'ମାଆ ଗଙ୍ଗା, ମୁଁ ଭାଗ୍ୟବତୀ, ମୋ ଜନ୍ମଦିନ ତୁମ ପାଖରେ ଏତେ ସୁନ୍ଦର ଜାଗାରେ ପଡ଼ିଲା, ମତେ ତୁମର ଆଶୀର୍ବାଦ ଦିଅ । ଆମ କଲ୍ୟାଣ ପାଇଁ ତୁମେ ପୃଥିବୀକୁ ଆସିଲ । ମୁଁ ମଧ୍ୟ ସବୁଦିନେ ଅନ୍ୟମାନଙ୍କ କଲ୍ୟାଣ କରେ । ଆମ କଥା କେବେ ଭୁଲିଯାଅ ନାହିଁ ।' ଗଙ୍ଗାଙ୍କୁ ପ୍ରଣାମ କର । ଚାଲ, ଏବେ ଚାଲ, ଏବେ ଚାଲିବାକୁ ଆରମ୍ଭ କରିବା, ବାଟରେ କଥାବାର୍ତ୍ତା ହେବା । ଅଟକିବାକୁ ଆମକୁ ବେଳନାହିଁ ।"

ଆଦିତ୍ୟ କହିଲା, "ଅପେକ୍ଷା କର ଦେଖ ଅଜା । ଘରକୁ ଗଲାମାତ୍ରେ ସେ ଏହିସବୁ ଭଲ କଥା ପାଶୋରି ପକେଇବ । ଆଈଙ୍କୁ ଆଉ ମାଆଙ୍କୁ ଯଦି ଦେ, ତା' ଦେ କହି ଅସ୍ତବ୍ୟସ୍ତ କରି ପକାଇବ ।"

"ନା, ନା, ଗଙ୍ଗାଙ୍କ ଜନ୍ମଦିନ ଭଳି ମଧ୍ୟ ମୁଁ ମୋର ଜନ୍ମଦିନ ପାଳିବି, ଗରିବଙ୍କୁ ଖାଦ୍ୟ ଓ ବସ୍ତ୍ର ଦେବି । କିନ୍ତୁ ମୁଁ ବୁଝିପାରୁନାହିଁ, ଗଙ୍ଗାଙ୍କର କେମିତି ଜନ୍ମଦିନ ହେଉଛି ?"

"କିପରି ହେଉଛି ମୁଁ ବି ଜାଣିନାହିଁ । ମୁଁ ଏତିକି ଜାଣିଛି, ଭଗୀରଥ ଯେଉଁଦିନ ପୃଥିବୀକୁ ଗଙ୍ଗାଙ୍କୁ ଆଣିଲେ ସେଦିନ ଥିଲା ହସ୍ତା ନକ୍ଷତ୍ର, ବୁଧବାର । ମାତ୍ର ତମ୍ଭାରି ବିଷୟ ଏ ସ୍ଥାନର ନାମ ଗଙ୍ଗୋତ୍ରୀ ହେଲା କାହିଁକି ?"

ଦେବଯାନୀ କହିଲା, "ଭାରି ସହଜ, ମୁଁ କହିବି କି ?"

"ଚେଷ୍ଟାକରି ଦେଖ", ଅଜା କହିଲେ ।

"ଏହି ସ୍ଥାନରେ ଗଂଗା ପୃଥିବୀକୁ ଓହ୍ଲାଇଲେ ହିନ୍ଦୀରେ ତାକୁ କହନ୍ତି

'ଗଙ୍ଗା ଉତରୀ' ।" ଏହାପରେ ଦେବଯାନୀ ବୁଝାଇଲା ।

"ଠିକ୍ ଅଛି, ତୋର କଥା ହେଲା । ଆଚ୍ଛା ଆଦିତ୍ୟ, ତୁ କ'ଣ ଭାବୁଛୁ ?"

"ମୋର କିଛି ଧାରଣା ନାହିଁ ।"

"ମୁଁ ତତେ ଟିକିଏ ସୂଚନା ଦେବି । ତୁ ଯଦି କଥାଟା ଧରିନେବୁ ତା'ହେଲେ ବୁଝିପାରିବୁ ଏ ଜାଗାର ନାଁ ଗଙ୍ଗୋତ୍ରୀ ହେଲା କାହିଁକି ।" ଅଜା ପୁଣି କହିଲେ, "ଦକ୍ଷିଣରୁ ଲୋକେ ଗଙ୍ଗୋତ୍ରୀ ଦେଖିବାକୁ ବହୁପଥ ଅତିକ୍ରମ କରି ଆସନ୍ତି ...।"

"ତା'ହେଲେ ବୁଝିଛି, ଦକ୍ଷିଣ, ଉତ୍ତର, ପୂର୍ବ, ପଶ୍ଚିମ । ଏଇ ହେଲା ଉତ୍ତରା-ଗଙ୍ଗା । କିନ୍ତୁ ଏହାକୁ ଉତ୍ତରା ଗଙ୍ଗା କାହିଁକି କହୁଛନ୍ତି ?"

"ତୁ ତ ବିଚକ୍ଷଣ ଦେଖୁଛି । ଏକଦମ୍ ଠିକ୍—ଏଇଭଳି ନାଆଁଟି ଆସିଛି । ଏଇଠି ଗଙ୍ଗା ଉତ୍ତର ଦିଗକୁ ଗତି କରୁଛି, ତେଣୁ ଗଙ୍ଗୋତ୍ରୀ । ନଦୀ ଧାର ଉତ୍ତରବାହୀ ହେଲେ ବିଶିଷ୍ଟ ଓ ମଂଗଳପ୍ରଦ ବୋଲି ମନେ କରାଯାଏ ।"

"କାହିଁକି ଅଜା ?" ଦେବଯାନୀ କଥାମଝିରୁ କହିଉଠିଲା ।

"ହିମାଳୟ ପର୍ବତରୁ ନଦୀଗୁଡ଼ିକ ପ୍ରାୟ ଦକ୍ଷିଣାମୁଖୀ ହୋଇ ବହି ଥାଆନ୍ତି । ଯଦି କୌଣସି ନଦୀର ସ୍ରୋତ ମଝିରେ ଉତ୍ତରଆଡ଼କୁ ମୁହାଁଏ, ମନେହୁଏ ସତେ ଯେମିତି ସେ ନିଜକୁ ଗୋଟିଏ ପତନରୁ ରକ୍ଷା କରିବାକୁ ଯାଉଛି । ଏହି ଗତି ପରିବର୍ତ୍ତନରେ ଲୋକଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ବାର୍ତ୍ତା ମିଳେ ।"

ଅଜାଙ୍କ ଆଡ଼କୁ ଚାହିଁ ଆଦିତ୍ୟ ପଚାରିଲା, "ଏଇଥିରୁ ପୁଣି ଗୋଟାଏ ବାର୍ତ୍ତା କ'ଣ ?"

ଅଜା ଉତ୍ତର ଦେଲେ, "ଏଣେତେଣେ ଚାହାଁନ୍ତି ଆଦିତ୍ୟ । ତଳକୁ ଭଲକରି ଚାହୁଁଥା, ଝୁଣ୍ଟିବୁ । ଏଇଥିରୁ ସଂକେତ ମିଳୁଛି ଯେ ଆମ ସଭିଙ୍କ ଲକ୍ଷ୍ୟ ଊର୍ଦ୍ଧ୍ୱଗାମୀ ହେଉ । ଏଇଠୁ ଗଂଗା ଉତ୍ତର ଅଭିମୁଖରେ ଗତି କରୁଛି । ତେଣୁ ଏହା ଗଙ୍ଗୋତ୍ରୀ ।"

ଆଦିତ୍ୟ କହିଲା, "ଅଜା, ମୁଁ ମୋ ପାଠ ବହିରେ ଗଙ୍ଗାଙ୍କ ବିବାହ କଥା ପଢ଼ିଛି ।"

ଦେବଯାନୀ ପଚାରିଲା, "କାହା ସଂଗେ ବିଭାଘର ?"

"ରାଜା ଶାନ୍ତନୁଙ୍କ ସାଂଗରେ ।"

"ଗଂଗୋତ୍ରୀ ଯାହା ବହିରେ ମୁଁ ପଢ଼ିଛି ଯେ ଶାନ୍ତନୁ ଗୋଟିଏ ଶସ୍ୟର ନାଁ । ଏହି ଶସ୍ୟ ଆଶ୍ୱିନ ମାସରେ ବୃଷ୍ଟି ଆବଶ୍ୟକ କରେ । ଆଶ୍ୱିନ ମାସରେ ଯେଉଁ ବର୍ଷା

ହୁଏ, ତା'କୁ କହନ୍ତି ଗଂଗାଜଳ । ଶାନ୍ତନୁ ଶସ୍ୟ ଓ ଗଙ୍ଗାଜଳ ମିଶି ପ୍ରଚୁର ଫସଲ ହେଲା । ଏଇ ହେଲା ଗଙ୍ଗାଙ୍କ ବାହାଘର । ଦେଖ, ଆମେ ଗଙ୍ଗାଙ୍କ ଜନ୍ମଦିନ, ନାମକରଣ, ବାହାଘର କଥା ହେଉ ହେଉ ଧର୍ମଶାଳାରେ ଆସି ପହଞ୍ଚିଗଲୁଣି," ଅଜା କହିଲେ ।

ସେମାନଙ୍କ ସମ୍ମୁଖରେ ଶରବାସର 'ଧର୍ମଶାଳା' । ସେଇଠି ପାଇନ ଅରଣ୍ୟ ସରିଛି ।

ଆଦିତ୍ୟ କହିଲା, "ଅଜା, ରହିବା ପାଇଁ ଏଇଟା ବଢ଼ିଆ ଜାଗା ।"

ଅଜା ଜିନିଷପତ୍ର ଓହ୍ଲାଉ ଓହ୍ଲାଉ କହିଲେ, "ଏଇଠି ତ ଆମେ ରାତି କାଟିବା । ଏଠି ଚୌକିଦାର ବୋଲି କେହି ନାହିଁ । ଏଠାରେ ଥିବା ସବୁ ଜିନିଷପତ୍ର ଅତିଥିମାନଙ୍କର ହେପାଜତରେ ଛାଡ଼ିଦିଆଯାଇଛି ।"

ଆଦିତ୍ୟ ଦଉଡ଼ିଯାଇ କବାଟ ଖୋଲିଦେଲା । କହିଲା, "ଦେଖ ଅଜା, ଏଠି ବାସନକୁସନ, ରନ୍ଧା ଜିନିଷ ସବୁ ଥୁଆ ହୋଇଛି ।"

ଅଜା କହିଲେ, "ଜିନିଷପତ୍ର ଖୋଲିଦିଅ । ଆମର ଯାହା ଅଛି ଓ ଏଠି ଯାହା ଅଛି ସବୁ ମିଶେଇ ଖେଷେଇର ବ୍ୟବସ୍ଥା କର । ବଡ଼ ଆଶ୍ଚର୍ଯ୍ୟର କଥା ଅନ୍ୟ ଧର୍ମଶାଳା-ମାନଙ୍କରେ ଜିନିଷପତ୍ର ଊଣା ହେବାକୁ ଲାଗେ । କିଏ ଚେରିଚୋରିକରି ନେଇ ଯାଆନ୍ତି; କିନ୍ତୁ ଏଠି ଜିନିଷ ପତ୍ର ବଢ଼ିବାରେ ଲାଗିଥାଏ ।"

ଆଶ୍ଚର୍ଯ୍ୟ ହୋଇ ଆଦିତ୍ୟ ପଚାରିଲା, "ଇଏ କେମିତି କଥା ?"

"ଯିଏ ଏଠି ଆସି ରହେ, ଗଲାବେଳେ କିଛି ନା କିଛି ଜିନିଷ ଛାଡ଼ିଦେଇଯାଏ । ଏଠି ନାଁ ଅଛି ଚୌକିଦାର ନାଁ ଅଛନ୍ତି ଜଗୁଆଳ । ଅତିଥିମାନଙ୍କର ବିବେକ ହିଁ ଏଠି ଜଗୁଆଳ କାମ କରେ । ପରିଣାମ ସ୍ୱରୂପ ହୁଏ ଯେ ଧର୍ମଶାଳାର ଜିନିଷପତ୍ର ସଂଖ୍ୟା କମିବା ପରିବର୍ତ୍ତେ ବଢ଼ି ବଢ଼ି ଚାଲିଥାଏ ।"

ଆଦିତ୍ୟ ପଚାରିଲା, "ଏ ଧର୍ମଶାଳା କିଏ ତିଆରି କରିଛନ୍ତି ?"

ଅଜା କହିଲେ, "ଆରେ ବାବୁ, ଆଜିକାଲି ଲୋକେ ବେଶୀ ନାଁ ପଛରେ ଧାଉଁଛନ୍ତି, କାମକଥା ପଛକୁ ଥାଉ । ଏଇ ଧର୍ମଶାଳା ଯେ କରିଥିଲା ସେ ସେବାମନୋଭାବନେଇ କରିଥିଲା । ସେ ତାଙ୍କ ନାଁ ଏଠି ଲେଖାଇନାହାନ୍ତି । ନାମଫଳକ ନଥିବାରୁ ଏ ବଙ୍ଗଳା ସଭିଙ୍କର । ଖୋଜାଖୋଜି ପରେ ଜଣାଯାଇଛି ଯେ ମୋରାବାଦ ଜିଲ୍ଲା ଅନ୍ତର୍ଗତ ଠାକୁରଦ୍ୱାରର ଶେଠ ରଘୁନନ୍ଦନ ଦାସ ଏହାର ତିଆରି ଏବଂ ସାଜସଜ୍ଜା କରିଥିଲେ ।"

"ଆସ କମ୍ବଳ ସବୁ ବଢ଼େଇ ଦେବା । ନିଆଁ ଜାଳିବା, ଖାଇବା ଜିନିଷ ଗରମ କରିବା । ମୁଁ ଥଣ୍ଡା ଜିନିଷ ଖାଇପାରେ ନାହିଁ," ଅଜା ମାନିଗଲେ ।

ସେମାନେ ଏତେ ହାଲିଆଟିହୋଇଯାଇଥିଲେ ଯେ ଆଗ ବିଛଣା ଖୋଲି ଶୋଇଗଲେ । କିନ୍ତୁ ଶେଯରେ ପଡ଼ୁ ପଡ଼ୁ ବିଚ୍ଛୁ କାମୁଡ଼ିଲା ପରି ଚମକି ଉଠି ଡେଇଁ ପଡ଼ିଲେ ।

କିଛି ନ ଜାଣିଲା ଭଳି ଅଜା ପଚାରିଲେ, "କ'ଣ ହେଲା କିରେ ?"

ସେମାନେ ଉତ୍ତର ଦେଲେ, "ଶେଯ ଭିତରେ ବିଜୁଳି କରେଣ୍ଟ ଅଛି ।"

"ଏଇଠି ବିଜୁଳି କେଉଁଠୁ ଆସିଲା ? ଆମେ ତ ବିଜୁଳିକୁ କେତେ ପଛରେ ଛା ଆସିଲୁଣି । ତୁମେ କ'ଣ ଏଠି ବିଜୁଳି ବଲ୍‌ବ ଦେଖିପାରୁଛ କି ?"

"କ'ଣ ଗୋଟାଏ ବଚ୍ଛଣାରେ ବସିଛୁ ଅଛୁ । ଆମକୁ ଇଲେକ୍ଟ୍ରିକ୍ ସକ୍ ଲାଗିଲା ଭଳି ଲାଗିଲା । ଟିକେ ବସି କରି ଦେଖନା ।"

ଅଜା କହିଲେ, "ମୁଁ କାହିଁକି ଦେଖିବି ? ମୁଁ ତ ଜାଣିଥିଲି ତୁମେ ଶେଯ ଛୁଇଁଲା ବେଳକୁ କେମିତି ଡିଆଁ ମାରିବ ମୁଁ ଦେଖିବି । ମୁଁ ତୁମକୁ କହି ନ ଥିଲି, ଆଗ କମ୍ବଳଗୁଡ଼ାକ ବିଛେଇ ଦିଅ ବୋଲି ? ତମେ ତ ଶୁଣିଲ ନାହିଁ । ଏ ଶୀତରେ ଭୂଇଁ ଶେଯ ବରଫ ଭଳି ଲାଗେ । ମୁଁ ଯେବେ ପ୍ରଥମେ ଆସିଥିଲି, ମୋର ବି ସେଇଆ ହୋଇଥିଲା । ବିଛଣା ଉପରେ କମ୍ବଳଟା ବିଛେଇ ଦିଅ । ତା'ପରେ ମୁଁ ଯେମିତି ବସିଛି ସେମିତି ବସ । କମ୍ବଳ କେତେ ଦରକାରୀ ତାହା ଜାଣିବ ଏବଂ ବୁଝିପାରିବ, ଏ ପାହାଡ଼ିଆ ଜାଗାରେ ମେଣ୍ଢା, ଛେଳିଙ୍କୁ ଲୋକେ କାହିଁକି ଏତେ ଯତ୍ନରେ ପାଳନ୍ତି ?"

ଆଦିତ୍ୟ କମ୍ବଳକୁ ଏମୁଣ୍ଡ ସେମୁଣ୍ଡ ଯାଏ ବିଛେଇ ଦେଇ କହିଲା, "ଅଜା, ମେଣ୍ଢା ଛେଳି ନ ଥିଲେ ତ କମ୍ବଳ ହୁଅନ୍ତା ନାହିଁ । ସେମାନେ ଉଷୁମ ପାଆନ୍ତେ କୁଆଡ଼ୁ ?"

ଦେବଯାନୀ ବେଶ୍ ଆରାମରେ ଗୋଟିଏ କମ୍ବଳ ଉପରେ ବସିଲା ଏବଂ ଗୋଟିଏ ଘୋଡ଼େଇ ହୋଇ କହିଲା, "ଆଜି ମେଣ୍ଢା ଛେଳି ମତେ ଗନ୍ଧଉ ନାହାନ୍ତି । ମୁଁ ଗୋଟିଏ ଛୁଆ ପୋଷନ୍ତି ।"

ପାହାନ୍ତା ହେଲା । ସେମାନେ ଭୂର୍ଜବାସ ଆଡ଼କୁ ବୁଲିଲେ । ରାତିରେ ଟିକିଏ ହାଲୁକା ତୁଷାରପାତ ହୋଇଥିଲା । ଗଛଲତାରେ ତୁଷାରକଣାମାନ ତଥାପି ଲାଗି ରହିଥିଲା ।

ଆଦିତ୍ୟ ପଚାରିଲା, "ଅଜା, ଆମେ ସମୁଦ୍ର ପତ୍ତନଠାରୁ କେତେ ଉଚ୍ଚରେ ଅଛୁ ?"

ଅଜା ଉତ୍ତର ଦେଲେ, "ଗୋମୁଖ ସମୁଦ୍ର ପତ୍ତନଠାରୁ ପ୍ରାୟ **13,000** ଫୁଟ ଉଚ୍ଚରେ ।"

ପ୍ରକୃତିର ଦୃଶ୍ୟଆଡ଼କୁ ହାତଦେଖାଇ ଦେବଯାନୀ ପଚାରିଲା, "ଅଜା, ଏ ସାମ୍ନାରେ ଯେଉଁ ପର୍ବତସବୁ ଦିଶୁଛି, ସେଗୁଡ଼ିକର କ'ଣ ନାଁ ଅଛି ?"

"ନିଶ୍ଚୟ ଅଛି । ଉପରକୁ ଉଠୁ ଉଠୁ ଆମେ ଦେଖିଲୁ ଭୃଗୁପନ୍ଥ ଶୃଙ୍ଗ, ଶିବଲିଙ୍ଗ ଶୃଙ୍ଗ ପଛରେ ସୁନେଲି ସୁମେରୁ । ଦେଖ, ଆଜି ସବୁ ପର୍ବତ ଧଳାଧଳ, ଏକା ସୁମେରୁ ସୁନା ପରି ଝଟକୁଛି । ଶିବଲିଙ୍ଗ ପଛରେ କେବଳ ଗୋଟିଏ ପାଖ ଆଖିକୁ ଦିଶୁଛି ।"

"ଗୀତାରେ ଯେଉଁ ସୁମେରୁ କଥା ଲେଖା ହୋଇଛି ଇଏ କ'ଣ ସେହି ସୁମେରୁ ?" ଆଦିତ୍ୟ ପଚାରିଲା ।

ଦେବଯାନୀ ପଚାରିଲା, "ତୁ କେମିତି ଜାଣିଲୁ ? ତୁ କ'ଣ ଗୀତା ପଢ଼ିଛୁ ?"

"ହଁ, ଆମ ବଡ଼ ପାଠିରେ ଗୀତା ପଢ଼ିଲାବେଳେ ସୁମେରୁ ନାଁ ତାଙ୍କ ତୁଣ୍ଡରୁ ଶୁଣିଛି ।"

"ବାବୁରେ, ମୁଁ ଯେଉଁ ନାଁ ସବୁ ଶୁଣୁଛି ତା' କହୁଛି । ଏଇଟା ଯେ ସୁମେରୁ, ଏ କଥା ମୁଁ ଜୋର ଦେଇ କହିବାଟା ଭୁଲ ହେବ । ଦେଖ୍, କି ଅଦ୍ଭୁତ ସୁନ୍ଦର ଦିଶୁଛି । କୈଳାଶ ଶୃଙ୍ଗକୁ ମଧ୍ୟ ମେରୁ କହନ୍ତି । କେଉଁଟା ପ୍ରକୃତ ସୁମେରୁ ସେଥିରୁ କ'ଣ ଯାଏ ଆସେ ? ଏହାର ଶୋଭା ଦେଖ୍, ଉପଭୋଗ କର ।"

ଅଜା ହଠାତ୍ ଅଟକି ଯାଇ କହିଲେ, "ଏଇଠି ବିନା ସାହାଯ୍ୟରେ ତୁ ଜମା ଚାଲିପାରିବୁ ନାହିଁ । ଖଣ୍ଡିଆ, ଆବଡ଼ାଖାବଡ଼ା ରାସ୍ତା । ଗୋଟାଏ ଗୋଳିଆ ମୁନବାଲା ବାଡ଼ି ନେ । ତାକୁ ମାଟିରେ ଠକ୍ ଠକ୍ କରି ବାଟ ବାରି ଚାଲିବୁ ।"

ଦେବଯାନୀର ହାତଧରି ବାଡ଼ି ସାହାଯ୍ୟରେ ଆଦିତ୍ୟ ଧୀରେ ଧୀରେ ବାଟ ଚାଲିଲା । ପିଲାମାନେ ପଚାରିଲେ, "ଏଇଟା ତ ଭଲ ବାଟ । ଏଠି କ'ଣ ଏମିତି ହେଲା ?"

ଅଜା ଉତ୍ତର ଦେଲେ, "ବରଫ ପାହାଡ଼ ଖସି ଏମିତି ହୋଇଛି । ଯେମିତି ବେଳେ ବେଳେ ନଈର ଗୋଟାଏ କୂଳ ଅତଡ଼ା ଖାଇ ଭାସିଯାଏ, ସେମିତି ଥରେ ଥରେ ତୁଷାର ଓ ପାହାଡ଼ର ଗୋଟାଏ ବିରାଟ ଖଣ୍ଡ ପର୍ବତ ଉପରୁ ଖସି ଆସି ଗଛ, ପଥର ଯାହା ତା ବାଟରେ ପଡ଼େ ସବୁକୁ ଧସେଇ ଆଣି ପକେଇ ଦିଏ । ଏମିତି ହେଲେ ପର୍ବତର ଅବକ୍ଷୟ ଘଟେ । ରାସ୍ତାରେ ପଥର ଖଣ୍ଡମାନ ଛିଟିକି ପଡ଼ିଥାଏ । ରାସ୍ତା ଖସଡ଼ା ହୋଇଯାଏ ଓ ଚାଲିବାକୁ ଅସୁବିଧା ହୁଏ । ଥରେ ପାଦ ଖସିଗଲେ ଭାଗୀରଥୀରେ ଯାଇ ପଡ଼ିବ । ମୁଁ ତୁମ ଅଣ୍ଟାରେ ଦଉଡ଼ିଟିଏ ବାନ୍ଧି ଦିଅନ୍ତି ବୋଲି ଭାବୁଥିଲି, ତାହା ହେଲେ ତୁମେ ପଡ଼ିଗଲେ ବି ନଈରେ ପଡ଼ନ୍ତ ନାହିଁ, ମୁଁ ତୁମକୁ ଓଟାରି ଧରନ୍ତି ।"

ଦେବଯାନୀ ପଚାରିଲା, "ଅଜା, ଏଇଠି କସ୍ତୁରୀ ମୃଗ ଦେଖା ଯାଆନ୍ତି କି ?"

"ହଁ, ଆଉ କିଛି ଅଧିକ ତୁଷାରପାତ ହେଲେ, ଉପରୁ ଥଣ୍ଡା ଜାଗାରୁ କସ୍ତୁରୀ ମୃଗମାନେ ଆସିବେ; କିନ୍ତୁ ଏମାନେ ଜମା ଗରମ ସହିପାରନ୍ତି ନାହିଁ । ତୁଷାର ପଡ଼ିଲେ



ଭାଲୁ, ଚିତାବାଘ, ବାଘ ଏମାନେ ବି ଜଳକୁ ଆସିବେ ।"

ଦେବଯାନୀ ପଚାରିଲା, "କସ୍ତୁରୀ ମୃଗ କ'ଣ ଅନ୍ୟ ମୃଗମାନଙ୍କ ଭଳି ?"

"ଇଏ କୃଷ୍ଣବର୍ଣ୍ଣ, ଆକାରରେ ସାନ ।"

ଦେବଯାନୀ ପଥରଟାରେ ଝୁଣ୍ଟି ପଡ଼ିଲା ଓ ତା'ପାଦରୁ ରକ୍ତ ବୋହିବାକୁ ଲାଗିଲା ।

"ଏବେ କ'ଣ କରିବା ?" ଆଦିତ୍ୟ ବିବ୍ରତ ହୋଇ ପଚାରିଲା ।

"ସ୍ଥାନୀୟ ଲୋକେ ଯାହା କରନ୍ତି ଆମେ ତାହା କରିବା ।" ଆଦିତ୍ୟ କୌତୂହଳପୂର୍ଣ୍ଣ ଆଖିରେ ଚାହିଁଥାଏ । ଅଜା ଏଣେ ତେଣେ ଖୋଜାଖୋଜି କରି ଗୋଟାଏ ଗୁଳ୍ମଗଛ ମୂଳରୁ ଓପାଡ଼ି ଆଣିଲେ । ସେ ତା'ର ଚେରକୁ ବାଟିଲେ ଓ ଦେବଯାନୀର କ୍ଷତରେ ଲଗାଇଲେ ।

ଆଦିତ୍ୟ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ଏଥିରେ କ'ଣ ଦେବଯାନୀର ପାଦ ଭଲ ହୋଇଯିବ ?"

"ନିଶ୍ଚୟ, ଏଠାରେ କୌଣସି ଡାକ୍ତରଖାନା ନାହିଁ । ଲୋକେ ସିଧାସଳଖ ଗଛରୁ ଔଷଧ ଆଣିଥାନ୍ତି । ଏହି ଗଛକୁ କହନ୍ତି 'ଅରଖ' ।"

ସେମାନେ ଯାଉଥାଆନ୍ତି । ଅଜା ଆଉ ଗୋଟିଏ ଗଛର ପତ୍ରଟିଏ ତୋଳି ଆଣିଲେ । ତା'କୁ ମକ୍ଚି କରି ଆଦିତ୍ୟର ପାଟିରେ ଦେଲେ । ପଚାରିଲେ, "କେମିତି ଲାଗୁଛି ?"

"ଏ ତ ପୂର ଚନ, ଭାରି ମିଠା ଲାଗୁଛି ଅଜା ।"

"ସେ ହେଉଛି ଏ ଅଞ୍ଚଳର ଚନ । କେତେକ ସାଧୁ ଏ ଗଛର ପତ୍ରକୁ ଶୁଖେଇ କରି ଚୂର୍ଣ୍ଣ କରନ୍ତି । ପ୍ୟାକୁ ପୋଡ଼ିଲେ ଏଥିରୁ ଗୋଟାଏ ସୁନ୍ଦର ବାସ୍ନା ବାହାରି ଚଉଦିଗ



ମହକାଇ ଦିଏ । ଲୋକେ ବିଶ୍ୱାସ କରନ୍ତି ଯେ ସାଧୁମାନେ ନାନା ମହିମା ଦେଖାଇପାରନ୍ତି । ଏଗୁଡ଼ିକର ବାସ୍ନା ଚନ୍ଦନର ସୁଗନ୍ଧ ଦିଏ ।”

ଅଜା ଟିକିଏ ଆଗକୁ ଯାଇ କହିଲେ, “ଏଇଠିକି ଆସ, ମୁଁ ତୁମକୁ ଗୋଟେ ଜିନିଷ ଦେଖାଇବି । ଏହି ବୁଦାଟିକୁ ଦେଖୁଛ ? ଏଇ ଗଛରେ ଫୁଲ ଫୁଟିଲେ ଶହ ଶହ ହଳଦିଆ ଫୁଲ ଫୁଟେ । ଦେଖ, ଏବେ ମଧ୍ୟ କିଛି ଦେଖିପାରିବ । ଏହି ବୁଦା ବେଳେବେଳେ କାନ୍ଦେ ।”

“କାନ୍ଦେ !” ପିଲାମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, “ଏମିତି ସୁନ୍ଦର ଜାଗାରେ କିଏ ବା କାନ୍ଦିବ ?”

“ବାସ୍ତବରେ କିଏ କାନ୍ଦେନାହିଁ । ବର୍ତ୍ତମାନ ସେପ୍ଟେମ୍ବର ସରିବାକୁ ବସିଲାଣି । ତୁଷାର ପଡ଼ିବାକୁ ଆରମ୍ଭ କଲାଣି । କିନ୍ତୁ ଯେତେବେଳେ ଶୀତ କମି ଆସିବ, ସ୍ୱାର



ବୃନ୍ତରୁ ଗୋଟାଏ ମିଠା ରସ ଝରିବ । ସେଇଥିପାଇଁ ଲୋକେ କୁହନ୍ତି ଯେ ଗଛ କାନ୍ଦେ । ଏହାକୁ 'ରୁଦନ୍ତି' କହନ୍ତି (ଯିଏ କାନ୍ଦେ, ହୃଦରେ) । ମୂଳ ନାଁ 'ରୁଦ୍ରବନ୍ତୀ'ର ଅପଭ୍ରଂଶ । ଏହା ଭାରି ଉପଯୋଗୀ ଔଷଧ ଗଛ । ଏହି ସ୍ଥାନଟି ନାନା ପ୍ରକାର ଔଷଧ ଗଛରେ ପୂର୍ଣ୍ଣ । ଏହି ଶାଗୁଆ ବୁଦାଟିକୁ ଦେଖୁଛ ? ଶୁଖିଲା କାଠିକୁଟାଭଳି ଏ ମଧ୍ୟ ଖୁବ୍ ସୁନ୍ଦର ଜଳପାରେ । ଏହାର ଭାରି ସୁନ୍ଦର ବାସ୍ନା । ଆଚ୍ଛା, ଶୁଣ 'ଗଙ୍ଗା ତୁଳସୀ' କଥା ।"

ଗଙ୍ଗା ତୁଳସୀ ଶୁଙ୍ଘି ଶୁଙ୍ଘି ଅଜା କହିଲେ, "ଏଇଟାକୁ ଟିକେ ଶୁଙ୍ଘି ଦେଖିଲ ।"

ଦେବଯାନୀ ଶୁଙ୍ଘିଲା ଉତ୍ତାରୁ କହିଲା, "ଏହାର ବଢ଼ିଆ ବାସ୍ନା । ଏ ପତ୍ରଗୁଡ଼ାକ ଆମ ଘରେ ଥିବା ତୁଳସୀ ଗଛର ପତ୍ରଭଳି ।"

ଅଜା କହିଲେ, "ବର୍ଷସାରା ଇଏ ଶାଗୁଆ ରହେ । ଆମ ବିଶ୍ୱକୋଷରେ ଏହା ନାଁ ଲେଖାହୋଇଛି 'ଚମ୍ପାବତୀ' ।"

"ଅଜା, ଭାଗୀରଥୀର ଆରପଟେ ଦେଖାଯାଉଥିବା ଏ କୁଟୀରଟି କାହାର ? ତପୋଭୂମି କ୍ଷେତ୍ରର ଋଷିମାନେ ଯିମିତି ସବୁ ନଡ଼ା କୁଡ଼ିଆ କରନ୍ତିନ, ଠିକ୍ ସେମିତି ଦିଶୁଛି ।"

ଅଜା କହିଲେ, "ସେଠି ଜଣେ ସାଧୁ ରହନ୍ତି ।"

"ତୁଷାରପାତ ହେଲେ ତାଙ୍କୁ କ'ଣ ଶୀତ ଲାଗେନାହିଁ ?"

ଆଦିତ୍ୟ କହିଲା, "ସେମାନେ କେବଳ ଶାନ୍ତି ଓ ନିର୍ଜନତା ଚାହାନ୍ତି ।"

ଅଜା ସେଥିରେ ଯୋଡ଼ିଲେ, "ସେମାନେ ବିଶ୍ୱାସ କରନ୍ତି ଯେ ଈଶ୍ୱର ତାଙ୍କର ସବୁ ଅଭାବ ପୂରଣ କରିବେ । ସେମାନେ ତାଙ୍କ ହାତରେ ଆପଣାକୁ ଉତ୍ସର୍ଗ କରି ନିଶ୍ଚିନ୍ତ ହୋଇ ରହନ୍ତି । ଶୀତଦିନେ କେତେକ ସାଧୁ ତଳ ଅଞ୍ଚଳକୁ ଯାଆନ୍ତି, ଅନ୍ୟମାନେ ତାଙ୍କ ଦେହକୁ ଏମିତି ତାଲିମ ଦେଇଛନ୍ତି ଯେ ସେମାନେ ଥୁରୁଥୁରୁ ଶୀତରେ କି ଗୁରୁଗୁରୁ ଗରମରେ କିଛି ତଫାତ୍ ଅନୁଭବ କରନ୍ତି ନାହିଁ । ଥରେ ତୁଷାରପାତ ବେଳେ ମୁଁ ଏଠାକୁ ଆସିଥିଲି ଓ ଜଣେ ସାଧୁଙ୍କ କୁଡ଼ିଆରେ ରାତି ଯାପନ କରିଥିଲି ! ସେ ସାଧୁଜଣକ ତାଙ୍କ ଉହ୍ମେଇର ନିଆଁ ଜଳେଇ ରଖିବା ପାଇଁ ଯଥେଷ୍ଟ କାଠ ରଖିଥାଆନ୍ତି ।"

ଆଦିତ୍ୟ ପଚାରିଲା, "ଏଠି ତ ଗଛ କିଛି ନାହିଁ, କାଠ କେଉଁଠୁ ମିଳେ ?"

"ସେ ଜଂଗଲୀ ବୁଦାମାନଙ୍କରୁ ଜାଳେଣି କାଠ ସଂଗ୍ରହ କରି ରଖିଥିଲେ । ମୁଁ ରାତିରୁ ଉଠି ଦେଖିଲି ଗୋଟାଏ ଆଲୁଅ ଜଳୁଛି ।"

ଅଜା ପୁଣି କହିଲେ, "ସକାଳୁ ଉଠି ମୁଁ ତାଙ୍କୁ ପଚାରିଲି, 'ଏସବୁ ଜଙ୍ଗଲି ବୁଦା ଆପଣ କେଉଁଠୁ ପାଇଲେ ?' ସେ କହିଲେ, 'ମୁଁ ଏଣେତେଣେ ବୁଲେ, ଯେଉଁଠି ଗୋଟାଏ ଗୁଳ୍ମ ମିଳେ ତାକୁ ଉପାଡ଼ି ଆଣେ । କୋଉଠୁ କେଉଁଠୁ ଆସିଛି ମୁଁ କହିପାରିବି ନାହିଁ । କିନ୍ତୁ ତା'ଭିତରୁ ଗୋଟାଏ ଗଛରୁ ଏମିତି ରସ ଝରୁଛି ଯେ ରାତିରେ ସେଥିରୁ ନାଳ ଆଲୁଅ ବାହାରେ । ସେ ରସ ଶୁଖିଗଲେ ଆଲୁଅ ଲିଭିଯାଏ ।"

"ଅଜା, ରାତିରେ ଯେଉଁଥିରୁ ଆଲୁଅ ବାହାରେ, ସେମିତି ଗଛଟିଏ ମୋର ଦେଖିବାକୁ ମନ," ଦେବଯାନୀ କହିଲା ।

"ଏଇ ଅଞ୍ଚଳରେ ନାନା ଜାତିର ଉପକାରୀ ଔଷଧ ଗଛ ଅଛି । ସେ ସବୁର ନାଁ ମତେ ଜଣାନାହିଁ । ତୁ ବଡ଼ ହେଲେ ଗବେଷଣା କରି ଜାଣି ପାରିବୁ । ଆଲୁଅ ବାହାରୁଥିବା ଗଛ ଖୋଜି ବସିଲେ ଆମେ ଆଉ ଗୋମୁଖକୁ ଯାଇପାରିବା ନାହିଁ । ଦେଖ, ଆମେ ଆସି ଗୋଟାଏ ଭୂର୍ଜ ଗଛ ପାଖରେ ପହଞ୍ଚିଗଲୁଣି ।"

ଆଦିତ୍ୟ ନଇଁପଡ଼ି ଭୂର୍ଜ ଗଛର ପତଳା, ମାଟିଆ କାଗଜଭଳି ଦିଶୁଥିବା ବଲ୍କଳ ଗୋଟେଇ ଆଣି କହିଲା, "କେତେ ପତଳା, ଚିକ୍କଣ ଓ ଚକ୍‌ଚକ୍ ! ଠିକ୍ କନା ପରି ।"

"ବେଶ୍ ସୁନ୍ଦର ତୁଳନା କରୁଛୁ ତ ।" ଅଜା କହିଲେ, "ଦୋକାନମାନଙ୍କରେ କପଡ଼ାସବୁ ଗୁଡ଼େଇ ରଖିଥିବାପରି ଭୂର୍ଜଗଛର ବଲ୍‌କଳ ତା' ଗଣ୍ଡି ଦେହରେ ଗୁଡ଼େଇ ହୋଇଥାଏ । ପ୍ରଥମ ଆସ୍ତରଣଟିକୁ ଯତ୍ନ ସହକାରେ ଛଡ଼େଇ ଦିଅ ।"

"ଦେଖ ଅଜା, ମୁଁ ଗୋଟିଏ ଆସ୍ତରଣ ଛଡ଼େଇଦେଲି । ତା'ତଳେ ଆଉ ଗୋଟାଏ ଦିଶୁଛି, ପୁଣି ତା' ତଳେ ଆଉ ଗୋଟାଏ । ଯଦି ଉପର ଆସ୍ତରଣରେ ଗମ୍ଭୀରିଆ ଦାଗ ଦିଆଯାଏ ତେବେ ସବୁଯାକ ଆସ୍ତରଣକୁ ଭେଦିଯିବ," ଆଦିତ୍ୟ କହିଲା ।

ଦେବଯାନୀ କଥା ମଝିରୁ କହି ଉଠିଲା, "ଅଜା, ମୁଁ ବର୍ତ୍ତମାନ ଜାଣିପାରୁଛି ରାମ, ସୀତା, ଲକ୍ଷ୍ମଣ କେମିତି ଲୁଗା ପିନ୍ଧୁଥିଲେ । ଗୋଟାଏ ଲମ୍ବା, ଚଉଡ଼ା ଭୂର୍ଜଗଛର ବଲ୍‌କଳକୁ ଶାଢ଼ୀଭଳି ପିନ୍ଧିହେବ ।"

ଅଜା କହିଲେ, "ଭୂର୍ଜଗଛର ବଲ୍‌କଳକୁ 'ଭୂର୍ଜପତ୍ର' କୁହାଯାଏ । ତୁମେ ଏ ପତ୍ର ଉପରେ ଟାଇପ୍ ମଧ୍ୟ କରିପାରିବ । ଏଥିରେ ଅକ୍ଷରଗୁଡ଼ିକ ସୁସ୍ପଷ୍ଟ ଓ ସୁନ୍ଦରଭାବରେ ଫୁଟି ଉଠିବ । ଅଧିକନ୍ତୁ ଏହାକୁ ପୋକମାନେ ନଷ୍ଟ କରନ୍ତି ନାହିଁ । ଛାପାଖାନା ହେବାର ବହୁ



ପୂର୍ବରୁ ପବିତ୍ର ଧର୍ମଗ୍ରନ୍ଥଗୁଡ଼ିକ ଏହି ଭୂର୍ଜପତ୍ରରେ ଲେଖା ହେଉଥିଲା । କହିଲ, ଆଉ କ'ଣ ସବୁ ଏ ଭୂର୍ଜପତ୍ରରେ କରାଯାଇପାରେ ?"

ଦେବଯାନୀ ପଚାରିଲା, "ଏହା କ'ଣ ଧୋଇହେବ ?"

"ହଁ, ଏହାକୁ ଧୋଇହେବ । ଏହା ମଧ୍ୟ ଖୁବ୍ ମଜଭୁତ । ତମେ ତାକୁ ଟାଣି ନ ଚିରିଲେ ସେ ଆପେ ଆପେ ଚିରିବ ନାହିଁ" ଅଜା ଉତ୍ତର ଦେଲେ ।

"ସେମିତି ହେଲେ ମୁଁ ଭାବୁଛି ମୁଁ ଏଥିରେ ଭାତ ବାଢ଼ିକରି ଖାଇବି, ଠିକ୍ କଦଳୀ ପତ୍ରରେ ଖାଇଲା ଭଳି । ତା ପରେ ମୁଁ ତାକୁ ଧୋଇଦେବି, ଭାଙ୍ଗିଭୁଙ୍ଗି କରି ମୋ ପକେଟରେ ରଖିଦେବି ପୁଣି ସେମିତି ବ୍ୟବହାର କରିହେବ । କଦଳୀ ପତ୍ରକୁ ତ ଫିଙ୍ଗି ଦେବାକୁ ହୁଏ । ଇଏ କିନ୍ତୁ ମୋର ସବୁଦିନିଆ ଚଳନ୍ତି ଥାଳି ହେବ," ଦେବଯାନୀ କହିଲା ।

ଅଜା କହିଲେ, "ଏଇ ଜାଗାର ଲୋକେ ଠିକ୍ ସେଇଆ କରନ୍ତି ଏବଂ ଏହାକୁ ପବିତ୍ର ବୋଲି ବିଚାରନ୍ତି । ଆଚ୍ଛା, ତମେ ଘରେ ଘିଅ କେଉଁଠି ରଖ ?"

ପିଲାମାନେ ଉତ୍ତର ଦେଲେ, "ବୋତଲରେ କିମ୍ବା ଟିଣରେ ।"

ଅଜା କହିଲେ, "ବୁଝିଲ, ଭୂର୍ଜ ଗଛର ବଳ୍କଳରୁ ମଧ୍ୟ ଏଭଳି ପାତ୍ର କରିହେବ । ପାହାଡ଼ରେ ଥଣ୍ଡାଯୋଗୁ ଘିଅ ବସିଯାଇ ଜମାଟ ବାନ୍ଧିଯାଏ । ତୁମେ ଏ ଘିଅକୁ ଭୂର୍ଜପତ୍ରରେ ବାନ୍ଧି ପକେଟରେ ରଖିପାର । ବସିଲା ଘିଅ କାହାରି ଲୁଗାରେ ଦାଗ କରେନାହିଁ । ଭୂର୍ଜଗଛର ବଳ୍କଳ ଏତେ ଚିକ୍କଣ ଯେ ଏହାକୁ ପ୍ଲାଷ୍ଟିକ୍ ପରି ବ୍ୟବହାର କରିହେବ । ଏହି ସାଧୁଙ୍କ କୁଡ଼ିଆରେ ଯେଉଁ ଫାଙ୍କ ସବୁ ହୋଇଛି, ଭୂର୍ଜପତ୍ର ଦେଇ ସେସବୁ ଫାଙ୍କକୁ ବନ୍ଦ କରାଯାଇଥିବାର ତୁମେ ଦେଖିପାରିବ, ଆମେ ଯେମିତି ଆମ ଛାତ ଉପରେ ବେଳେ ବେଳେ ପ୍ଲାଷ୍ଟିକ୍ ଚାଦର ଘୋଡ଼େଇଥାଉ ।"

ପିଲେ କହିଲେ, "ବାଃ, କି ଚମତ୍କାର ଗଛ ! ଏହି ଭୂର୍ଜପତ୍ର କେତେ କାମରେ ଲାଗେ । ଏ କନା ହୋଇପାରେ, କାଗଜ ହୋଇପାରେ, ପ୍ଲାଷ୍ଟିକ୍ ଚଦର ମଧ୍ୟ ହୋଇପାରେ ।"

"ଖିଆ କଥା କହୁଁକହୁଁ ଦେବଯାନୀର ଡାଲୁଆ ଓ ପକୁଡ଼ି ଖାଇବାକୁ ମନହେଲା ।"

ଅଜା ହସିଲେ, "ଏମିତି ତୀର୍ଥଯାତ୍ରାରେ ଗଲାବେଳେ ପକୁଡ଼ି, ଡାଲୁଆ, ଜିଲବି ଭଲ ନ ମିଳିଲା କଷ୍ଟ କଥା ମନେ ପଡ଼ିଲେ ପକେଟରେ ହାତ ପୂରାଇଦେବ ଓ କିଛି ଶୁଖିଲା ଫଳ, ଚନାବାଦାମ, ମୁଢ଼ି ଯାହା ମିଳିବ ତାକୁ ପାଟିରେ ପକେଇବ ଓ ଭାବିବ ଯେ ତୁମେ ଜିଲବି, ଡାଲୁଆ ଖାଉଛ । ଏଇ ହେଉଛି ଯାତ୍ରୀମାନଙ୍କ ପାଇଁ ପ୍ରଥମ ନିୟମ, ବୁଝିଲ ।"

"କାହିଁକି ଅଜା ?" ଦେବଯାନୀ କହିଲା ।

ଅଜା କହିଲେ, "ଗୋମୁଖ ଗଲାବେଳକୁ ତୁ ଯଦି ଆଣ୍ଡିହାତ ପକୁଡ଼ିକୁ ମନେ ପକେଇବୁ ତେବେ ତୋ ଆଗ ଆଗରେ ଖାଲି ଆଣ୍ଡିଙ୍କର ତେଲ କରେଇ ନାଚିବ, ଏମିତି ହେବ ଯେ ତୁ ଗଙ୍ଗାର ମୂଳ ଉତ୍ସକୁ ଦେଖିଲାବେଳେ ମଧ୍ୟ ତୋ ମନଥିବ ଡାଲୁଆ, ପକୁଡ଼ିରେ ।"

ଆଦିତ୍ୟ ହସି ହସି ଗଡ଼ିଗଲା । ଅଜା ଗୁଣୁଗୁଣୁ କରି କ'ଣ ଗୋଟାଏ ସଂସ୍କୃତ ଶ୍ଳୋକ ବୋଲୁଥିଲେ । ହଠାତ୍ କହି ଉଠିଲେ, "ଦେଖ, କେଡ଼େ ସୁନ୍ଦର ଧଳା ଭୂର୍ଜଗଛଟିଏ ।"

"ହଁ ତ, ବେଶ୍ ସୁନ୍ଦର । କିନ୍ତୁ କ'ଣ ହୋଇଛି ଦେଖିଲ । କେଉଁଠୁ ଗୋଟାଏ ପର୍ଯ୍ୟଟକ ଆସି ଏ ଗଛର ଗଣ୍ଡିରେ ତା ନାଁ ଖୋଳେଇ ଦେଇଛି । ବର୍ତ୍ତମାନ ସେହି ବକଳକର ସବୁ ଆସ୍ତରଣ ନଷ୍ଟ ହୋଇଯାଇଥିବ," ଆଦିତ୍ୟ କହିଲା ।

"ଏହି ଅପୂର୍ବ ସୁନ୍ଦର ପରିବେଶ ମଣିଷକୁ ଉଚ୍ଚମନା କରିଦିଏ । ଯେଉଁମାନେ ଏଠିକି ଆସନ୍ତି, ସେମାନେ ପ୍ରକୃତିର ବିଭବକୁ ସମ୍ମାନ ଦେବା ଉଚିତ । କୌଣସି ଗୋଟିଏ ଗଛ ବା ବୁଦାରେ ଆଘାତ କରିବା ମଧ୍ୟ ପାପ । ଦେଖ, ପୁଷ୍ପବାସ ଆସିଗଲା । ଏବେ ଆଉ ଆମେ ଗଛ ଦେଖିବା ନାହିଁ । ଦେଖିବା କେବଳ ଫୁଲରେ ଭରି ସାନସାନ ଗଛ," ଅଜା କହିଲେ ।

ଆଦିତ୍ୟ କହିଲା, "ଅଜା, ରାସ୍ତାଟା ଟିକିଏ ଅଣଓସାରିଆ ହୋଇଆସୁଛି ।"

"ସାବଧାନରେ ଚାଲ । ଦେଖ, ଭାଗୀରଥୀ ମଧ୍ୟ ସେମିତି ଅଣଓସାରିଆ ଜଣାଗଲାଣି । କିନ୍ତୁ ଦେଖ, ସ୍ରୋତ କେମିତି ପ୍ରଖର । ଭାଗୀରଥୀର ମୂଳ ଉତ୍ସ ଏତେ ପାଖେଇଗଲାଣି ବୋଲି ଜଣାପଡୁନାହିଁ । ମୁଁ ଥରେ ନର୍ମଦାର ମୂଳ ଉତ୍ସ ଦେଖିଥିଲି । ନର୍ମଦା ଏକୁଟିଆ ଧାରଟିଏ ହୋଇ ଅନେକ ମାଇଲ ଯାଏ ପ୍ରଖର ଗତିରେ ବହିଥାଏ ।"

ନଦୀଆଡ଼କୁ ହାତ ଦେଖାଇ ଦେବଯାନୀ କହିଲା, "ଦେଖ, ଦେଖ । ପାଣିରେ କେମିତି ବରଫ ଖଣ୍ଡସବୁ ଭାସୁଛି । ଉପର ମୁଣ୍ଡକୁ ଚାହିଁଲେ ଜଣାଯିବ ସତେ ଯେପରି ବରଫର ଚାଦର ଭାସୁଛି ଏବଂ ତା' ତଳେ ପାଣିର ଗୋଟାଏ ପ୍ରଖର ସୁଅ ଛୁଟିଛି ।"

"ଅଜା, ଭାଗୀରଥୀର ଉତ୍ପତ୍ତିସ୍ଥଳ କେଉଁଠୁ ?"

"ଶୁଣ କହୁଛି, ଭାଗୀରଥୀ ଗୋଟାଏ ବିରାଟ ବରଫ ନଦୀତଳୁ ବାହାରିଛି । ସେ ନଦୀର ଓସାର ମାଇଲଏ । ସେ ପୁଣି ଉପରକୁ ଅନେକ ମାଇଲ ଧରି ଲମ୍ବି ଯାଇଛି । ନଦୀଟି ବରଫ ତଳେ ବହିଯାଉଛି । ଆମେ ତାକୁ ଗୋମୁଖରେ ଦେଖିପାରିବା ।"

"ଅଜା, କାହିଁକି ସେ ଜାଗାକୁ ଗୋମୁଖ କହନ୍ତି ? ତାହା କ'ଣ ଗୋଟିଏ ଗାଈର ମୁହଁ ଭଳି ?" ଦେବଯାନୀ ଟିକିଏ ବିସ୍ମିତ କହିଲା, "ହଁ, ଏହା ସତ ଯେ ଭାଗୀରଥୀ ଯେଉଁଠାରୁ ବାହାରିଛି, ସେ ସ୍ଥାନର ଆକୃତି ଠିକ୍ ଗୋଟିଏ ଗାଈର ମୁହଁଭଳି ।"

ଅଜା କହିଲେ, "ହଁ, ନଦୀଟା ସତେ ଯେମିତି ତା ଥୋଡ଼ରୁ ଅଜାଡ଼ିହୋଇ ପଡ଼ୁଛି । ତଟକା ତୁଷାରର ରଂଗ ଧଳା, କିନ୍ତୁ ପରେ ଗାଈର ଥୋଡ଼ ଭଳି କଳଙ୍କିତ ମାଳ ।"

ଦେବଯାନୀ ପଚାରିଲା, "ତାହାହେଲେ ସେଇଥିପାଇଁ ତାକୁ ଗୋମୁଖ କହୁଛନ୍ତି ?"

ଅଜା ବୁଝାଇ କହିଲେ, "'ଗୋ' ଗୋଟିଏ ସଂସ୍କୃତ ଶବ୍ଦ । ଏହାର ଅନେକ ଅର୍ଥ ଅଛି । ସେଗୁଡ଼ିକ ହେଲା ଇନ୍ଦ୍ରିୟ, ଭୂମି, ଗାଈ ଏବଂ ଏହିଭଳି ଆହୁରି ଅନେକ । ଏ କ୍ଷେତ୍ରରେ ଏହି ତିନୋଟିଯାକ ଅର୍ଥ ପ୍ରଯୁଜ୍ୟ । ପ୍ରଥମ ଅର୍ଥ 'ଇନ୍ଦ୍ରିୟ'କୁ ନେଲେ 'ଗୋମୁଖ' ହେଉଛି ସେହି ସ୍ଥାନ ଯେଉଁଠି ଇନ୍ଦ୍ରିୟ ଗୁଡ଼ିକ ଗଙ୍ଗାଙ୍କୁ ଅନୁଭବ କରିପାରନ୍ତି । ଏହି ସ୍ଥାନରେ ଭୂମିତଳୁ ଏବଂ ବରଫ ଭିତରୁ ବାହାରି ଦୃଶ୍ୟମାନ ହେଉଛି ।"

ଆଦିତ୍ୟ କହିଉଠିଲା, ମୁଁ ଦ୍ୱିତୀୟ ଅର୍ଥଟିକୁ ବୁଝାଇବି । 'ଗୋ'ର ଅର୍ଥ ହେଉଛି ଭୂପୃଷ୍ଠ, ଗୋମୁଖ ହେଉଛି ଭୂପୃଷ୍ଠର ସେହି ସ୍ଥାନ, ଯେଉଁଠାରେ ଗଙ୍ଗା ଆବିର୍ଭୂତା ହୋଇଛନ୍ତି । ମୁଖର ଅର୍ଥ ତୁମେ ଆମକୁ କହିଛ—ସେହି ସ୍ଥାନ ଯେଉଁଠୁ ବାହାରେ ।"

ଅଜା କହିଲେ, "ଠିକ୍, ଠିକ୍ ।"

"ଗୋର ଅର୍ଥ ମଧ୍ୟ ଗାଈ । ଅଜା ଆମକୁ ଆଗରୁ କହିଛନ୍ତି ଯେ ଗଙ୍ଗାର ଉତ୍ପତ୍ତି ସ୍ଥଳ ଠିକ୍ ଗାଈର ମୁହଁଭଳି," ଦେବଯାନୀ କହିଲା ।

ଅଜା କହିଲେ, "ତମେ ଅର୍ଥ କଥା ଭାବୁ ଭାବୁ ଗୋମୁଖରେ ଆସି ପହଞ୍ଚିଗଲ । ଏହା

କ'ଣ ଗାଈର ମୁହଁ ଭଳି ଦିଶୁନି କି ? କିନ୍ତୁ ଗୋମୁଖ ଠିକ୍ ସେହିଭଳି ରହିବ ନାହିଁ । ବରଫ ତ, ଏଇ ସବୁବେଳେ ତା'ର ଆକାର ପରିବର୍ତ୍ତନ କରି ଚାଲିଥିବ ।"

ଆଦିତ୍ୟ କହିଲା, "ଖାଲି ଗୋମୁଖର ପରିବର୍ତ୍ତନ ହେଉନାହିଁ ଅଜା, ସମଗ୍ର ପଥରଟିର ମଧ୍ୟ ପରିବର୍ତ୍ତନ ହେଉଛି । ବର୍ଷା, ତୁଷାରପାତ, ଅତଡ଼ା ଖସିବା ବା ଗଛ ଉପୁଡ଼ି ପଡ଼ିବା ଦ୍ୱାରା ଏ ସବୁଥିରେ ପରିବର୍ତ୍ତନ ଲକ୍ଷ୍ୟ କରିହେଉଛି ।"

ଅଜା କହିଲେ, "ସ୍ରୋତଟା କେତେ ପ୍ରଖର ଦେଖ । ଦେବ ପ୍ରୟାଗ ପର୍ଯ୍ୟନ୍ତ ଏହି ଭଳି । ଏ ସ୍ରୋତ ଏତେ ପ୍ରଖର ଯେ, ଯେଉଁଠି ଯେଉଁଠି ମୋଡ଼ ନେଇଛି ବଡ଼ଗୁଡ଼ା ଭୁଷୁଡ଼ି ପଡ଼ୁଛି ।"

ଆଦିତ୍ୟ ଗଙ୍ଗାଜଳ ନେବାପାଇଁ ଆଣିଥିବା ପାତ୍ରଟିକୁ ବାହାର କଲା ଏବଂ ପଚାରିଲା, "ଅଜା, ଗଙ୍ଗାଜଳ ସବୁବେଳେ ପବିତ୍ର ରହେବୋଲି କୁହାଯାଉଛି । ଏହା କ'ଣ ସତ ?"

ଆଦିତ୍ୟ ହାତରୁ ପାତ୍ରଟି ନେଇ ଅଜା ଉତ୍ତରରେ କହିଲେ ଯେ ଗଙ୍ଗୋତ୍ରୀର ବରଫ ନଦୀରେ ଅନେକ ବରଫ ନଦୀ ଯାଇ ମିଶିଅଛି । ସେ ସବୁଥିରେ ଏତେ ଖଣିଜଦ୍ରବ୍ୟ ଅଛି ଓ ଅନ୍ୟାନ୍ୟ ଏତେ ଦ୍ରବ୍ୟଗୁଣ ମିଶି ରହିଛି, ଯାହାଦ୍ୱାରା ଗଙ୍ଗାଜଳ ବିଶୁଦ୍ଧ ରହିଛି ।" ସେ ପୁଣି କହିଲେ, "ଏ କଥା ସେ ଆଗରୁ ଶୁଣିଛନ୍ତି । କିନ୍ତୁ ଏଭଳି ଘଟିବାର ଅନ୍ୟାନ୍ୟ କାରଣ ମଧ୍ୟ ଥାଇପାରେ ।"

ବିମୁଗ୍ଧ ହୋଇ ହାତଯୋଡ଼ି ସେମାନେ ଚାହିଁଥାନ୍ତି ତୁଷାର ଧବଳ ଜଳରାଶି, ଉଚ୍ଛଳ, କଳକଳ ନାଦରେ ହିମଖଣ୍ଡ ଧରି ପ୍ରଖର ଗତିରେ ବହି ଯାଉଥିବା ଭାଗୀରଥୀକୁ ।

"ଭାଗୀରଥୀ କୀ ଜୟ," ଅଜାଙ୍କ ମୁହଁରୁ ସ୍ୱତଃ ବାହାରି ପଡ଼ିଲା ।

ଆଦିତ୍ୟ କହିଲା, "ଅଜା, ତୁମେ ଭାଗୀରଥୀଙ୍କ କାହାଣୀ ଆମକୁ କହିବ ଟିକେ ?"

ଅଜା ଆରମ୍ଭ କଲେ, "କାହାଣୀଟି ହେଲା ଏଇଭଳି । ଭଗୀରଥ ଗଙ୍ଗାଙ୍କୁ ତାଙ୍କର ଚିରକାଳ ହିମାଚ୍ଛାଦିତ ଭୁବନରୁ ଓହ୍ଲାଇ ଆଣିବା ପାଇଁ ଦୀର୍ଘକାଳ ଧରି ତପସ୍ୟା କରିଥିଲେ । ଗଂଗାଙ୍କ ସ୍ରୋତକୁ ଶିବ ଯଦି ତାଙ୍କ ଜଟାରେ ଧାରଣ କରି ନ ଥାନ୍ତେ ତେବେ ତାହାର ତୀବ୍ର ଗତି ଆମର ଏ ବସୁନ୍ଧରାକୁ କେଉଁ ରସାତଳଗାମୀ କରି ଦେଇଥାଆନ୍ତା । ଶିବଲିଂଗ ପର୍ବତମାଳା ଶିବଙ୍କର ଜଟାଭଳି । ଯଦି ସେହି ବନ୍ଧୁର ପର୍ବତମାଳା ଗଂଗାଙ୍କୁ ଧରି ରଖି ନ ଥାନ୍ତେ , ଗଂଗା ଯଦି ସମତଳ ଅଞ୍ଚଳକୁ ଓହ୍ଲାଇ

ଆସିଥାଆନ୍ତା, ତାହାହେଲେ କି ଏପର୍ଯ୍ୟନ୍ତ ଘଟି ନ ଥାନ୍ତା ।" ସେ ଟିକିଏ ଅଟକିଯାଇ ପୁଣି କହିଲେ, "ଆମେ କ'ଣ ଏମିତି ବସି ଗପୁଥିବା ନା ଗଂଗାସ୍ନାନ କରିବାକୁ ଯିବା ? ଯାହାହେଉ ଏଇ ଦୁଇଟା ପଥର ଭିତରେ ଥିବା କୁଣ୍ଡଟିରେ ମୁଁ ଯାଉଛି ବୁଡ଼ ପଡ଼ିବ ।"

ଦେବଯାନୀ ପଚାରିଲା, "ଆମେ କେମିତି ଗାଧୋଇବୁ ? କୁଣ୍ଡ ପାଣି ତ ଭାରି ଥଣ୍ଡା ।"

"ଖାଲି ଦେଖୁଥାଅ ।" ଅଜା ବରଫ ଉପରକୁ ପଥର ଖଣ୍ଡିଏ ଫୋପାଡ଼ିଲେ । ବରଫ ଖଣ୍ଡ ଭାସିଗଲା ଓ ତା ଭିତରୁ ପାଣି ବାହାରିଲା । ଅଜା ଲୁଗାପଟା ଉତାରିଲେ । 'ହର ହର ଗଂଗେ' ମନ୍ତ୍ର ପାଠ କରି ସେ ପାଣିଭିତରେ ପ୍ରବେଶ କଲେ । ଗୋଟିଏ ଥର



ବୁଡ଼ ମାରି ପୁଣି ଭୁଷ୍‌କିନା ଉପରକୁ ଉଠି ଆସିଲେ ।

ଦେବଯାନୀ ଓ ଆଦିତ୍ୟ ଅଜାଙ୍କ ବାହୁ ଧରିବା ପାଇଁ ତିଆରି ହେଉଥିଲେ ।

ଅଜା କହିଲେ, "ରହ, ରହ, ମୁଁ ତୁମ ପାଖରେ ଯାଉଛି । ନ ହେଲେ ଶୀତରେ ତୁମେମାନେ ଡାଙ୍ଗ ହୋଇଯିବ ।"

ଦି ଜଣଯାକ ବୁଡ଼ ମାରିଲେ, କିନ୍ତୁ କୁଣ୍ଡଭିତରୁ ବାହାରକୁ ଉଠେଇ ଆଣିବା ପାଇଁ ଅଜାଙ୍କ ସାହାଯ୍ୟ ଲୋଡ଼ା ହେଲା ।

"ଅଜା, ଆମେ କାକର ପାଣିରେ ବୁଡ଼ି ପୂରା ଡାଙ୍ଗ ହୋଇ ଯାଇଥିଲୁ । କିନ୍ତୁ ଏବେ ମତେ ଟିକିଏ ଉଷୁମ ଲାଗିଲାଣି," ଆଦିତ୍ୟ କହିଲା ।

"ମୁଁ ମୋର ଗରମ ପୋଷାକ ଆଉ ପିନ୍ଧିବି ନାହିଁ," ଦେବଯାନୀ କହିଲା ।

ଅଜା କହିଲେ, "ଫାଗେ ଫାଗେ ପୋଷାକ ପିନ୍ଧି ପକାଅ, ନ ହେଲେ ବେମାରରେ ପଡ଼ିଯିବ । ତାପରେ ତୁମକୁ ପିତା ଚେରମୂଳର ରସ ପିଇବାକୁ ପଡ଼ିବ ।



ସେମାନେ ଭଲଭାବରେ ଲୁଗାପଟା ପିନ୍ଧସାରିଲା ପରେ ଭାଗୀରଥୀ ଉପର ଆଡ଼କୁ ଥିବା ଗ୍ଲେଟ ପାହାଡ଼ଟି ଉପରକୁ ଗଲେ ।

ଅଜା କହିଲେ, "ମୁଁ ଜାଣେନାହିଁ, ଜୀବନରେ ପୁଣି କେବେ ଏଭଳି ସୁଯୋଗ ଆସିବ । ଆସ, ଗଂଗାଙ୍କୁ ପୂଜାକରିବା ।" ଅଜା ବ୍ୟାଗରେ ଆଣିଥିବା କ୍ଷୀର ଢାଳିଲେ ଏବଂ ଫୁଲ ଗଂଗାଙ୍କୁ ଅର୍ପଣ କଲେ । ପିଲାଙ୍କୁ କହିଲେ, "ଆସ, ଏବେ ଆଳତି କରିବା ।"

ଦେବଯାନୀ ବ୍ୟସ୍ତ ହୋଇ କହିଲା, "ଅଜା, ଆମର ତ କର୍ପୂର ନାହିଁ, ଦିଆସିଲି ନାହିଁ । ଘରେ ଛାଡ଼ି ଆସିଲ କି ?"

ତା ତୁଣ୍ଡରୁ କଥା ନ ସରୁଣୁ ଅଜା ପଥର ଖଣ୍ଡେ ଗୋଟେଇଲେ । ସେ ପଥର ତଳେ କିଛି ଶୁଖିଲା ଘାସ ଥିଲା । ସୁଖିଲା ଘାସତକକୁ ବଳି ଗୋଟିଏ ମଶାଲ ପରି କଲେ । ତାପରେ ଦୁଇଟା ପଥରକୁ ଘଷି ନିଆଁ ବାହାର କରି ଶୁଖିଲା ଘାସରେ ନିଆଁ ଲଗାଇ-ଦେଲେ । ତାକୁ ନେଇ ସେ ଆଳତି କଲେ ଏବଂ ଗଂଗାଙ୍କର ସ୍ତୁତି ବୋଲିଲେ ।

ପିଲାମାନେ ତାଙ୍କ ସହିତ ଯୋଗଦେଲେ,

"ମା ଗଂଗା, ତୁମକୁ କରୁଛୁ ପ୍ରଣାମ
ସର୍ବେ କରନ୍ତି ତୁମରି ଅର୍ଚ୍ଚନ,
ଏ ଜୀବନ ଆଉ ପରଜନ୍ମ ପାଇଁ
ତୁମ ଆଶୀର୍ବାଦ ଥାଉ ଗଂଗାମାଈ ।"



